# ଯୁଦ୍ଧ

ଡକ୍ଟର ଗୋପୀନାଥ ମହାନ୍ତି, ଏମ୍. ଏ. ଡ. ଲିଟ୍ (ଏଚ୍. ସି.)

( ପଦ୍ମଭୂଷଣ, ଭାରତୀୟ ପ୍ରଥମ ସାହିତ୍ୟ ଏକାଡେମୀ
ପୁରସ୍କାର ପ୍ରାପ୍ତ, ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ )

ଫ୍ରେଣ୍ଡସ୍ ପବ୍ଲିଶର୍ସ



ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ . କଟକ . ୨

ଯୁଦ୍ଧ —ଲେଖକ : ଡକ୍ଟର ଗୋପୀନାଥ ମହାନ୍ତି, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ୧୯୯୧, ପ୍ରଚ୍ଛଦପଟ : ଅସିତ୍ ମୁଖାର୍ଜୀ, ମୁଦ୍ରଣ : ନନ୍ଦକିଶୋର ପ୍ରେସ୍, ଡଗରପଡ଼ା, କଟକ-୨



**YUDDHA**—Written by : Dr. Gopinath Mohanty, Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), 1st Edition : 1991, Cover design : Asit Mukherjee, Printer : Nandakishor Press, Dagarapara, Cuttack-2

PRICE—Rs. 30.

# ଉତ୍ସର୍ଗ

ଏ କୃତିରୁ ଲେଖକଙ୍କର ପ୍ରାପ୍ୟ ସମୁଦାୟ ରଏଲ୍‌ଟି ଭାରତର ଉତ୍ତର-ପଶ୍ଚିମ ସୀମାନ୍ତରେ ସ୍ୱଦେଶରକ୍ଷା କାର୍ଯ୍ୟରେ ନିଯୁକ୍ତ ଭାରତର ବୀର ଜଓ୍ୱାନମାନଙ୍କ କଲ୍ୟାଣ ପାଣ୍ଠିକୁ ଉତ୍ସର୍ଗୀକୃତ ।

ଲେଖା ଆରମ୍ଭ ବ୍ଲ୍ୟାକଆଉଟ୍ ରାତ୍ର — ଗୋପୀନାଥ ମହାନ୍ତି
୨୧ । ୯ । ୬୫

# ଯୁଦ୍ଧ

## ( କାବ୍ୟ )

### ସର୍ଗ—୧

ହଠାତ୍ ଆସିଛି,—ଯୁଦ୍ଧ ।
ଖବରକାଗଜ ପଢ଼େଁ,
ରେଡ଼ିଓ ମୁଁ ଶୁଣେ, ଘରେ ଅଛି,
ଯେମିତି ଅଚାଏ ଯାଦୁ, ବାରମ୍ବାର ଗଲଗଲ ହୁଏ
ଆଜ ଆପଣା ଆପେ ହାତ ପଡ଼ଯାଏ ତା'ର ମୋଡ଼ଣାରେ
କାଳେ ଥିବ,—
ଯୁଦ୍ଧର ଖବର,—
କି ଖବର ? ଆମର ବୀର ଜଓ୍ୱାନ୍,—
ଲୁହା ଦେହ, ଛଞ୍ଚାଣର ଆଖି
ବାଘ ପରି ଛାତି,
କିଏ ଧରେ ରାଇଫଲ୍, କିଏ ଚଳାଏ ତୋପ, କିଏ ଚଳାଏ ଟ୍ୟାଙ୍କ୍
କିଏ ଉଡ଼େ ଆକାଶରେ ସାଇଁ ସାଇଁ ଜେଟ୍ ବିମାନରେ,
କିଏ ଚଳାଏ ଜାହାଜ,
ଆମର ବୀର ଜଓ୍ୱାନ୍‌ମାନେ,—
ଶତ୍ରୁର କେତେଟା ବିମାନ, କେତେଟା ଟ୍ୟାଙ୍କ୍ ଧ୍ୱଂସକଲେ,
କେତେଟା ଘାଟି ନେଲେ,
କେଉଁଠି ପଡ଼ିଲା ଶତ୍ରୁର ବୋମା ?
ଚୀନ କେତେଦୂରରେ ?
କ'ଣ ଉଆଇଲେ ନୂଆ କୂଟ, ନୂଆ କଳ ?

୧

ଏ ସହରର ଖୋଜୁଛି ଆଶ୍ରୟ ଆଉ ଅଭୟ, ବୋଧହୁଏ
ଅନ୍ଧାରରେ ।
ନୂଆ ଶବ୍ଦ ଶୁଭେ, 'ନିଷ୍ପ୍ରଦୀପ ରାତି',
ରାସ୍ତାରେ ଆଲୁଅ ନାହିଁ, ଘରେ ଘରେ କଳାଢଙ୍କା ଟୋପ ଆଲୁଅ
ଉପରେ,

କବାଟ ଝରକା ବନ୍ଦ, ଯେଝା ଘରେ ସିଏ,
ମଣିଷ ଗଢ଼ିଥିଲା ସଭ୍ୟତା, ସେ ଲୁଚୁଛି ଅନ୍ଧାର ଭିତରେ,
ପ୍ରକୃତି ଗଢ଼ିଥିଲା ମେଘ ଆଉ ରାତି ଆଉ ତାରା,
ଆଉ ଜକ୍କୁଜୁଳିଆ ପୋକ
ସେମାନେ ଆଜି ମୁକ୍ତ,
ସତେ ଅବା,—

ମହେଞ୍ଜୋଦାରୋ କି ବେବିଲୋନ୍ କି ଖଣ୍ଡଗିରି ସଭ୍ୟତା ଉପରେ
ମାଡ଼ି ଚାଲିଛି ପ୍ରକୃତିର ମାଟିଗଦା ଅରମାର ଅନାବନା ଚେର
ଘାସ ଗୁଳ୍ମ ଲତା,
ନିଷ୍ପ୍ରଦୀପ ରାତିର କମ୍ବଳ ତଳେ ସହର ହଜିଛି,
ଲୁଚିଛି ବଡ଼ର ଆଉ ଅବଡ଼ର, ପାପ ଆଉ ପୁଣ୍ୟ,
ଶ୍ରେଷ୍ଠୀ ଓ ମଜଦୁର୍,
ଠିକଏ ଆଗରୁ ଯୁଦ୍ଧର ଭେରୀ ବାଜିବା ଆଗରୁ
ଲାଗିଥିଲା ଯେଉଁ ଚହଳ,
ଘର ଝାଡୁଆ ଦାଣ୍ଡ ଝାଡୁଆ ଶବ୍ଦ,
ମୂଲ ଆଉ ଦର କଷାକଷି
ବଳ କଷାକଷି
ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ବିକାଶ ପାଇଁ ନାନାମତର ଆନ୍ଦୋଳନ
ସ୍ତବ୍ଧ ସବୁ ଆଜି ।

୩

ଆଜର ଡାକ ଯୁଦ୍ଧର ଡାକ
ତେଜ ଆଜ ନଜେ ତେଜ ହୁଅ,
ଏକଜୁଟ ହୁଅ,
ମାଡ଼ଗୁଲ,—

ସେ ଧ୍ୱନ କ୍ରୋଧର, ଶତ୍ରୁ ଆମ ଦେଶ ଆକ୍ରମଣ କରିଚ,
ମଣିଷ ମାରିଚ, କେତେ ଘର ଜାଳିଚ,
ଚୂନା କରିଚ, ଏବେ ବ, ଗୁଳ ଚଳୋଉଚ, ବୋମା ପକୋଉଚ
ଶତ୍ରୁ ଲୋଡ଼ିଚ ଆମକୁ ଦଖଲ କରିବ, ଅମଳ କରିବ,
ନେବ ଆମର ସ୍ୱାଧୀନତା,
ଲୁପ୍ତ କରିବ ଆମର ଅବସର, ବଶ୍ରାମ, ଆନନ୍ଦ,
ସବୁ ଶିଶୁ ସମ୍ପଦରୁ ବଞ୍ଚିତ କରିବ,
ନେବ ଆମ ଜୀବନ, ଆଉ ଜୀବନଠୁଁ ବଡ଼ ଯାହା,
ଆମର ମର୍ଯ୍ୟାଦା ।

ଯାହାର, ସତ୍ୟପ୍ରତି ଆଗ୍ରହ ନାହିଁ, ଅଛି ମିଥ୍ୟାପ୍ରତି,
ବଶ୍ୱାସ ଉପରେ ଆଶ୍ରା ନାହିଁ, ଅଛି ଶଠତା ଉପରେ,
ଶିକ୍ଷାର ସଂଯମ ନାହିଁ ଯାଠିଁ, ଖାଲି ଅଜ୍ଞାନର ଦର୍ପ,
ଅବୁଝା ନଷ୍ଠୁରତା,
ବର୍ବରତା, ଅକୁଳୀନ ମନ ଆସ୍ଫାଳନ
ଈର୍ଷା,
ତାହାର ପ୍ରତି ଘୃଣା

ସେ ଧ୍ୱନ,
ଶତ୍ରୁର ଆଘାତରେ ଆହତ ହେବାର ଦୁଃସ୍ୱପ୍ନରେ
ଜୈବୀ ଆତଙ୍କର ପ୍ରତିରୋଧ-ଉଦ୍ଦୀପନା,
ପ୍ରାଣୀର ପ୍ରଥମ ଓ ସ୍ୱାଭାବିକ ରକ୍ଷାବର୍ମ,

ଯେମିତ ଆଖି ପିଛୁଡ଼ା ମାରେ, ଆଗରେ କଏ ଆଙ୍ଗୁଠି ଗୋଜ କଲେ
ହାତ ଛୁଟିପିଟି ହୋଇଉଠେ, ଠିକଣା ଥାନରେ ଚପିଦେଲେ,
ଯେଉଁଥିପାଇଁ ଛୁଆବାଲା ଗାଣ୍ଡ ଭୁଷି ଗୋଡ଼ାଏ,
ସାପ ଫଣା ଟେକେ,
ବଳେଇ ଧନୁ ହୋଇ ଖଞ୍ଜେ ତୀକ୍ଷ୍ଣ ଶର ।

## ୪

କଏ ଚାହେଁ ବୋମା ପଡ଼ୁ ? ମରନ୍ତୁ ଶିଶୁ ଆଉ ସ୍ତ୍ରୀଲୋକ
ଜଳୁ ଗୋରୁ ଆଉ ବାଜ୍ରାକ୍ଷେତ ଆଖୁ କ୍ଷେତ
ଜଳ ଆଉ କୋଠା ?

ପଡ଼ୁ ନାପାମ୍ ବୋମା, ଜଳୁଥିବ ଜୀଅନ୍ତା ଦେହରେ ଅସଏ,
ନିଭିବ ନାହିଁ,
ଜଳୁ ନିଦରେ ଶୋଇଲା ମଣିଷ, ଡାକ୍ତରଖାନାରେ ଶୋଇଲା ରୋଗୀ,
ମସ୍‌ଜିଦ୍‌ କି ମନ୍ଦିରରେ ପ୍ରାର୍ଥନାରତ ମଣିଷ ଗୋଷ୍ଠୀ,
ଚାହାଲରେ ଦୁଧଖିଆ ପିଲା,—କଏ ଚାହେଁ ?

କଏ ଚାହେଁ ବୃଷ୍ଟି ହେଉ ଗୁଳି ବାରୁଦ ନିଆଁ ଧୂଆଁ
ପିଚ୍‌ପିଚ୍‌ ରକ୍ତର ଧାର ଗଡ଼ଗଡ଼ ଯାଇ ହେଉ ନାଳ ସୁଅ,
ପବନ ନଈରେ ମିଶୁ ,
ଠିଆ ଠିଆ ଟଳି ପଡ଼ନ୍ତୁ ଭେଣ୍ଡାମାନେ,
ଦରପୋଡ଼ା ଖଣ୍ଡିଆଖାବଡ଼ା କବନ୍ଧ ପଡ଼ୁ ଲଦାଲଦି
ମେଞ୍ଚାମେଞ୍ଚ ହୋଇ
ଘାସ ପୋଡ଼ିଥିବା ଦଣ୍ଡା ଉପରେ କ୍ଷେତ ଉପରେ
ଜୀଅନ୍ତା ଖଣ୍ଡିଆ ନାଚନ୍ତୁ ?

ଏ ସଂସାରରେ କେଇଟା ବରଷ,
ମଣିଷ ତ ଖୋଜେ ଶାନ୍ତି ଆଉ ଶିକ୍ଷା ଆଉ ସ୍ନେହ,

ଆଉଁସିବାକୁ ଲୋଡ଼େଁ ପାରର ବେକ, ଶିଶୁର ଗାଲ,
ଦେଖିବାକୁ ଲୋଡ଼େଁ ଭରାପୂର ଶାଗୁଆ ନେଳ ପୂର୍ତ୍ତିତା
ରଙ୍ଗ ରଙ୍ଗର ହସ

ଶୁଣିବାକୁ ଲୋଡ଼େଁ ପ୍ରିୟଜନଙ୍କ ଚିହ୍ନା ସ୍ୱର
ଭାବେ ଫସାରଟାଯାକ ହୁଅନ୍ତାକି ପ୍ରିୟଜନମୟ,
ସବୁଠିଁ ସବୁଘର ତା ଆପଣାର, ସମସ୍ତେ ତା ନିଜର ମଣିଷ
ଏ ବସୁଧାର ସବୁ 'ବସ୍ତୁ' ସମସ୍ତିଙ୍କ ପାଇଁ
ଯେମିତି ପବନ କି ଆଲୁଅ
ଦିନ କି ରାତି
ହେଉ ଯାହାର ଚମର ରଙ୍ଗ ଯାହା, ଯାହାର ଯା ବୋଲି
ଖାଉ ପିନ୍ଧୁ ସେ ଯେପରି ଆପଣା ରୁଚିରେ
ଖେଳୁ ସେ ଯେବେ ଯେପରି ଖେଳଣା
ସୁନାର କି ମାଟିର

ଆପଣାକୁ ଶାନ୍ତି ଦେଉ ଯେଉଁ ମାର୍ଗରେ ସେ ଯାହାର ଖୁସି
ସମସ୍ତେ ହେଉନ୍ତୁ ସମସ୍ତିଙ୍କ ନିଜର ମଣିଷ
ଜଗତଯାକର ଉପକାରୀ ହିତକାରୀ ।
ମଣିଷ ଖୋଜୁଛି ବନ୍ଧୁ, ସ୍ୱାସ୍ଥ୍ୟ, ଜୀବନ, ଆନନ୍ଦ,
ଶାନ୍ତି ।

ସେ ଶାନ୍ତି,
ଉଣିଉଣା ହୋଇଛି,
ଏଠି ସେଠି ପବନରେ ଉଡ଼ୁଛି ତା'ର ରକ୍ତମଖା ପର, ଧଳାଛୁମ ।

୫

ବରଷା ଅନ୍ଧାର ରାତି,
ରାସ୍ତାରେ ଆଲୁଅ ନାହିଁ,
ଘରେ ଘରେ କବାଟ ପଡ଼ୁଛି,
ଅନ୍ଧାରରେ ସତର୍କ ପ୍ରହରୀ, ଆଲୁଅ ଆଜି ଶତ୍ରୁ, ଶତ୍ରୁକୁ ସଂକେତ

ଓଃ ! ମେଘର ଓଢ଼ଣା ଟେକ
ଜକଜକ ମେଘର ଜାଲ ଜାଲ ଗହଣା ପିନ୍ଧ
ସଫା ଚୋସ୍ତ ଚକ୍‌କଣ ଆକାଶ ଅରକରେ ଜହ୍ନ ମୁହଁ ଟେକଲା
ମୁହଁ ଟେକଲା ଅମଳାନ ଚିର ଯୁବତୀ କବି-ପ୍ରିୟା ଚାନ୍ଦ,
ହସିଦେଲା,
ଯୁଗେ ଯୁଗେ କେତେ ଢେଉ ଉଠିଛି ସେ ହସର ଓଠରେ
କେତେ ସ୍ୱପ୍ନ ଭାଙ୍ଗିଛି,
ବଗିଚାରେ ଗୁଚ୍ଛଗୁଚ୍ଛ ଶଙ୍ଖର ରଜନୀଗନ୍ଧା
ତଳଠୁ ଆଜ ଟଗର
ପାଣିରେ ଯେତେ ଧଳାକଇଁ ପାଣି କେନ୍ଦୂର
ନଈ ପଠାର ଧଳା ବେଣାଫୁଲ
ସେମାନେ ବି ହସିଲେ
କିନ୍ତୁ ମଣିଷର
ରକ୍ତରେ ତାତି, ହାତମୁଠାରେ ଜାବ,
ଆଖିରେ ଶଙ୍କା ସନ୍ଦେହ କ୍ରୋଧ

ମନହୁଏ ଥାଆନ୍ତା ଯଦି ଏପରି
କରିହୁଅନ୍ତା ଜହ୍ନକୁ ବ୍ଲାକ୍ ଆଉଟ୍, ତାର ବଲ୍‌ବ୍ ଖୋଲି ଦେଇ
ଯଦି ଉଡ଼ାଜାହାଜ ବିଧ୍ୱଂସୀ କମାଣର ଗୁଳିରେ
ଖସେଇ ହୁଅନ୍ତା ଆକାଶର ଏ ଜହ୍ନଟାକୁ !

କିଏ ଜାଣେ,—
ଏଇ ଯୋଶଷ ଫୁଲଆ ଜହ୍ନ ଆଲୁଅରେ
କାଠ ଚିହ୍ନି ଘର ଚିହ୍ନି ଶତ୍ରୁପକ୍ଷର ଉଡ଼ାଜାହାଜ
ବୋମା ଅଜାଡ଼ୁଥିବ କେଉଁ ଡାକ୍ତରଖାନାର ରୋଗୀଙ୍କର ଉପରେ,
କୁଲି ମଜୁରିଆ ବସ୍ତି ଉପରେ, କୃଷୀ ଗାଁ ଉପରେ
ଦେଉଳ ଉପରେ ମସଜିଦ୍ ଗିର୍ଜା ଗୁରୁଦ୍ୱାର ଉପରେ
ଇସ୍କୁଲ ପିଲାଙ୍କ ବୋର୍ଡ଼ିଂ ଉପରେ ଆଉ ଗୋରୁ ଗୁହାଳ ଉପରେ

ହଜାରେ ପାଉଣ୍ଡିଆ ବୋମା—
ପାଗଳ ରଣରଙ୍ଗା ରକ୍ତମୁହାଁ—
ରଙ୍ଗ ଛୁଟେଇ ବାହା ଆଜି ଜଙ୍ଘ ଛୁପୁଡାଏ ।

୭

"ଗର୍ଜ ଗର୍ଜ କ୍ଷଣଂ ମୂର୍ଖ ମଧୁ ଯାବତ୍ ପିବାମ୍ୟହଂ"
ସଂସ୍କୃତ ସେ ବୁଝେ ନାହିଁ
ମରଣ ଜୀବନକୁ ଡରେ
ଅନ୍ୟାୟ ଡରମରେ ନ୍ୟାୟକୁ
ଅସତ୍ ସତ୍ୟକୁ,
ସେ ଅଛି ବୋଲି,
ସେ ଥିବାହିଁ ତ ବିପ୍ଳବ
ଅନ୍ଧାରର ଧଡ଼ିତଳେ କ୍ଷୀଣ ଉଷାର ଆଲୁଅ ଧାସ,
ବିପଦ ସେ ଅନ୍ଧାରର ଦୁନିଆଁକୁ

ଯେ,—
ଲଦରେ ବି ସାଞ୍ଜୁ ପିନ୍ଧା ବଜ୍ରକାପଡା, ଝିଙ୍କ କି ଗଣ୍ଡାର,
ଆଜି, ତାଁକୁ ମଣିଷ ପିଏ
ବନ୍ଧୁକର ଧୂଅ,
ବୋମାର,
ଛୁରିର

ଯେ ବିଶ୍ୱାସ କରେ ଦୁନିଆଁର ସବୁ ସଂସ୍କୃତି ସଭ୍ୟତା
ଜନ୍ମହୁଏ ବନ୍ଧୁକର ଉଦରରୁ
ସୁସ୍ଥ ମଣିଷର ଅଖଳା ହସ ତା'ର ଲହୁବନ୍ଧା ମୁହଁ ଉପରେ
ସାଞ୍ଜୁ ଉପରେ
ପ୍ରାଗୈତିହାସିକ ସରୀସୃପର ଶରୀର ଉପରେ
ଆଣବିକ ବୋମାଠୁଁ ବହୁଗୁଣେ ଅଧିକ
ଧ୍ୱଂସର ପ୍ରବାହ

ସେ ତ ତା'ର
କଳଙ୍କିତ ଯନ୍ତ୍ରଣାମୟ
ଉନ୍ମାଦମୟ
ଟେକଟେକ ଉଟପଟ ଷଡଟ ରୂପର
ଅସ୍ମିତାର ଶେଷ ନଗ୍ନ ଦ୍ରୁତା

ତା'ର ଆଡାଣରେ ଶେଷ ଗର୍ଜନ
ତା'ର ଭୁର୍ଲି ଦୁଲୁକା ଝୁରୁ ମାଣ୍ଡ
ତା'ର ସମୁଦ୍ର ଉତ୍କଳା ଲଞ୍ଜପିଟା
ଯେବେ ଯେବେ ତାର
ଧାଡ଼ ଧାଡ଼ ଲୁହା ଦାନ୍ତ ଲୁହା ନଖ
ନିଆଁ ଧୂଆଁର ନିଶ୍ୱାସ
ଘାଟି ଆଁ କଲେ ଜ୍ୱାଳାମୁଖୀ ଚଳୁଆର ଫସ୍‌ଫରସ୍ ଝଳ
ଆଖିରୁ ଫର୍ଣ୍ଣେସ୍ ଝଟିର ତାଉ

ସେଇ ଗର୍ଜନ ପିଞ୍ଜରର
ଯେବେ ଟଣ ଟଣ ଯେବେ ଗରଳ ହୁଂକାର
ସୁପ୍ତ ମଣିଷର ସବଳ ହସରେ ସେ ପାଉଁଶ ହୋଇ ଝଡ଼ିପଡ଼େ
ଯେମିତ ତା'ର ମାର୍କିନ୍ ସେବର୍ ଜେଟ୍
ଲୁହାର ଶରୀର ହୁଏ ଗୋଡ଼ା ଲୁହା ଘୁଷ, କମାର ଶାଳର
ଯେମିତ ତା'ର ମାର୍କିନ୍ ପ୍ୟାଟନ୍ ଟ୍ୟାଙ୍କ୍
କ୍ଷେତ ହଳ ଦଣ୍ଡା ବାଟେ ମାଟି ତଳେ

ଆଜ ନୁହେଁ,
ଯୁଗେ ଯୁଗେ ଏଇଆ ତ ସତ୍ୟ,

୨

କେତେ ଦାନବାଲ୍
ଆଉ ଭାନବାଲ୍
ଯୁଦ୍ଧର ଏମୁଣ୍ଡ ସେମୁଣ୍ଡ

ନେପୋଲିଅନ୍
ଆଉ ହିଟ୍‌ଲର୍
ଏସିଆର ଏମୁଣ୍ଡ୍ରୁ ସେମୁଣ୍ଡ୍ରୁ କେତେ ମଙ୍ଗୋଲ୍
ଭାରତର ଏମୁଣ୍ଡ୍ରୁ ସେମୁଣ୍ଡ୍ରୁ

କେତେ କେତେ ଦଳଦଳ
ଯୁଗଯୁଗର
କାହାନ୍ତି ସେମାନେ ?
ପ୍ରାଣର ଅମୃତ ଅମୃତ୍ରାଣୀ ହେଲେ
ଜନ୍ମଦାତ୍ରୀ
ବୁଢ଼ୀମାଆ ଗପ

ଏବେ ବି ତୁଷ୍ଟରେ ବରଫ ପଡ଼େ
ଶୋଇ ରହେ ନାଲି ନୁହେଁ ଧଳା
ଭାରତରେ ଝଟକେ ଧାନ ଫସଲର
ଥାକ ଥାକ ଥାକ
ନାଲି ନୁହେଁ ଶାଗୁଆ

ବହେ ଗଙ୍ଗା ଯମୁନା ସିନ୍ଧୁ ବ୍ରହ୍ମପୁତ୍ର
ଗୋଦାବରୀ ମହାନଦୀ
ପିଢ଼ୁଆ ସାବେରୀ ସୁବର୍ଣ୍ଣ ଝଂଝାବତୀ
ସିପ୍ରା ଧାପୁଆ ବେତ୍ରବତୀ ଇଚ୍ଛାମତୀ

ଭାସିଯାଏ ଜେବେ କଦଳୀପତ୍ର ଫୁଲ ଅରୁଆଚାଉଳ,
ସେଠି ରକ୍ତ ନାହିଁ ପୂଯ ନାହିଁ

ଏବେ ବି
ଶହ ଶହ ବରଷର ଶିଉଳମଖା ଆମର ଏଇ ପଥର ଦେଉଳରୁ
ଶୁଭେ ସଞ୍ଜର ଆରତି ଘଣ୍ଟ,
ଆମ ଗୁରୁଦ୍ୱାରରୁ ଶୁଭେ ଗମ୍ଭୀର ଭଜନ
ଗଗନ ମେଁ ଥାଲ୍ ରବିଚନ୍ଦ୍ର ଦୀପକ ବନେ

ଆମ ମସ୍‌ଜଦ୍‌ ଉପରୁ ମୁଁ ଏ ଜନ୍‌ ଜଗତକୁ ଡାକ ହାକ କହେ
ଆଲ୍ଲା ହୁ ଆକବର୍‌
ଈଶ୍ବର ପରମ ଦୟାଳୁ
ଆମ ଗିର୍ଜା ଘରୁ ଶୁଭେ ସମବେତ ପ୍ରାର୍ଥନା ସଙ୍ଗୀତ
ଈଶ୍ବରେ ଶରଣ ଗଲି

ପଶ୍ଚରେ ବି ନାହିଁ ପଦେ,—
ଗଜ୍‌ନିର ମାହାମୁଦ୍‌, କାହିଁ ଗଲ ?
କେଉଁଠି ରହିଲ ହେ ଚେଙ୍ଗିଜ୍‌ ହେ ତୈମୁର ହେ କଳାପାହାଡ଼
କ୍ଲାଇବ୍‌ ଓ୍ୱାରେନ୍‌ ହେଷ୍ଟିଂସ୍‌ ଓ୍ୱେଲେସ୍‌ଲି ଡାଲ୍‌ହାଉସି ଦଳ
କାହିଁ ତୁମର ସତ୍ତା ଆଜ ପତ୍ତା
ହେ ଶୁମ୍ଭ ନିଶୁମ୍ଭ ହେ ମହିଷାସୁର
ଶଙ୍ଖାସୁର ବକାସୁର ମୂରାସୁର ହେ ଯେତେ ଅସୁର

ତୁମେ ହୋଇଥିଲ ପରି
ଅଜେୟ ଅମର ପୁଣି ସୃଷ୍ଟିର ଶେଷ କଥା
ସେତେବେଳେ ବି ତୁମେ
ତପୋବନରେ ଶାନ୍ତିର ସାଧନାକୁ ଆସିଥିଲ ଲଣ୍ଡଭଣ୍ଡ
କରିଦେବ ବୋଲି
ଯଜ୍ଞବେଦୀ ଅପବିତ୍ର କରିବ ବୋଲି
ଏମିତି କେତେ ବ୍ଲାକ୍‌ ଆଉଟ୍‌ ରାତିରେ
ଲାଗୁଥିଲ ଏ ସୃଷ୍ଟି ଧ୍ୱଂସ ହେବ
ଯୋଉଠି ରହିଥିଲ ଖାଲି ତୁମର ବାଣଖେଳର ହଆଳି

ନିଆଁ ଧୂଆଁ ହଣା କଟା ଛେଚୁଛେଚି ଗୁଣ୍ଡାକର ପୋଡ଼ାଜଳା
ଧ୍ୱଂସ
ଆକାଶ ଚିର୍ଚ୍ଛି ହେଉଥିଲା
ଭୂଇଁ ଫାଟୁଥିଲା
ପାହାଡ଼ ଚାଡ଼ିହୋଇ ଆକାଶରେ ଉଡ଼ି ପଡ଼ୁଥିଲା ଖଣ୍ଡଖଣ୍ଡ ହୋଇ
ନଈପାଣି ତାତିଥିଲା ନାଲି ହୋଇଥିଲା
ଘାସ ବି ଜଳି ଯାଉଥିଲା

ତୁମେମାନେ ସଂଖ୍ୟା ଟିପୁଥିଲ କେତେ କଣ ହାସଲ କରିତ
ଭାବୁଥିଲ ସଂସାରରେ
ଈଶ୍ୱରଙ୍କ ରାଜ୍ୟ ନୁହେଁ, ତୁମର ରାଜ୍ୟ ଚଳିଲା
ଯୁଗେ ଯୁଗେ
ସେ ରାଜ୍ୟରେ ସୂର୍ଯ୍ୟ କେବେ ଅସ୍ତ ହେବ ନାହିଁ
ତୁମର ଗଣ୍ଡି କେବେ କ୍ଷୟ ହେବ ନାହିଁ
ବନ୍ଧୁକର ପୁଅ ତୁମେ, ସନାତନ

କାହିଁ ତୁମେ ହେ କ୍ଷୁବ୍ଧ କ୍ଷୁଧିତ ପାଗଳ ଦସ୍ୟୁମାସ୍ତ ଗୌଣେମନା,
ସଭ୍ୟତାର ଶତ୍ରୁ
ଆପଣାର ଶତ୍ରୁ
କାହିଁ ତୁମେ ହେ ଅଝଟ ଅବୁଝା ଅବୋଧ
ତୁମେ ଜଣ
ଏଇ ଧୂଳି ମୃତ୍ତିକ
ଯହିଁରୁ ଜନ୍ମୁଛି ଖାଲି ଅନାବନା ଘାସ !

୮

ଶୁଣନ୍ତୁ ତୁମେ, ହେ ପାଗଳ ରଣରଙ୍ଗା ଦଳ, ହେ ଅଶାନ୍ତ,
ହେ ଅଭିଶପ୍ତ,
କାନରେ ଅମୃତ ପଡ଼େ,
ଖଟିଖିଆ ଝାଳ ସରସର ସୁସ୍ଥ ମଣିଷର ପବିତ୍ର କଣ୍ଠରୁ
ପଡ଼େ "ଭାଇ" ଡାକ,
ଭାଇ, ତୁମେ ନୁହଁ ପୋଲା ମଲା ବନ୍ଧୁକର ପୁଅ
ତୁମେ ବି ତ ଅମୃତର ପୁତ୍ର
ଯେ କରିଛି ସୃଷ୍ଟି ଏଇ ଆକାଶର ତାରାମାନଙ୍କୁ
ସୂର୍ଯ୍ୟ ଚନ୍ଦ୍ର ପୃଥିବୀକୁ
ଘାସକୁ କୀଟକୁ
ସେ ତମକୁ ସୃଷ୍ଟି କରିଥିଲା, ମତେ ବି ।

କାର୍ତ୍ତିକ ଚଡ଼ିଶ ଘଇତାନ୍ ତମଠିଁ, ତୁମେ ବି ତ ଦେବତାତ୍ମା

ତମର ଏ ଥିଏଟର ସାଜରୁ ତଳେ କଅଁଳ ମଣିଷ ଦେହ,
ସହଜ ଛାଡ଼ି କଷ୍ଟ ହୁଏ କି ଦୁଃଖରେ
କାହା ଅଭିଶାପ ବଳେ ଜୀବନ ଛାଡ଼ି କର ମରଣକୁ ପୂଜା
ଆନନ୍ଦ ଛାଡ଼ି ଖୋଜ ଦୁଃଖ
ଶାନ୍ତି ଛାଡ଼ି ଯୁଦ୍ଧ ଖୋଜ ?

ମୁଠା ଖୋଲ, ଛିଣ୍ଡଁ ଏ ପାପୁଲି, ହାତ ଧର, ଉଠ
ଏ ପୋଷାକ ଛିଣ୍ଡାଇ ଫୋପାଡ଼ ଦେହରେ ପବନ ବାଜୁ,
ମନ ଖୋଲ, ପଡୁ ସେଠି ଆଲୁଅ
ଏ ଭ୍ରୂକୁଟି ଅସୁନ୍ଦର ଦିଶେ, ହସ, ଆନନ୍ଦ ହୁଅ
ଖାଅ ଭାତ ଅବା ରୁଟି
ଶାଗ ଅବା ମାଛ, ଯାହା ମିଳେ
ଶୋଷଣରେ କି ଲୁଣ୍ଠନରେ ନୁହେଁ, ଆପଣା ଶ୍ରମରେ,
ଖାଇସାରି ଶୋଇପଡ଼ ଶାନ୍ତ ହୋଇ,
ବିଶ୍ୱାସ ରଖ, ଈଶ୍ୱର ଅଛନ୍ତି, ସେ ମଙ୍ଗଳମୟ,

ତୁମର ନଥାଉ ଶଙ୍କା ଅବା ଦନ୍ଦ, ତୁମର ବି ସ୍ୱସ୍ତି ହେଉ ।
ସବୁଠିଁ ତୁମର ବନ୍ଧୁ, ତୁମ ଘର,
ବନ୍ଧୁ ପାଇଁ ସବୁ ଘରେ ଅଛି ପିଢ଼ା ଓ ଢାଳେ ପାଣି
ଖାଇଲା ପତରରେ ଭାତ
ମିଠା ସମ୍ଭାଷଣ
କବାଟ ଖୋଲା,
ବିଶ୍ୱାସ, ଶ୍ରଦ୍ଧା, ସ୍ନେହ,
ଦିଅ ଆଉ ନିଅ ।

୯

କହିଥିଲେ ତ ଅନେକେ
ସବୁକାଳେ ସବୁ ଯୁଗରେ

ଅବୁଝା ପାଗଳ ଦଳ ବୁଝି ନଥିଲେ
ଏବେବି ବୁଝୁନାହାନ୍ତି

ତଥାପି କୁହା ଲାଗିଥିବ
ଯେତେକାଳ ମନୁଷ୍ୟ ଜାତି ଥିବ
ସେହି ବାଣୀଙ୍କ ସରସ୍ୱତୀ
ତାଙ୍କଠି କ୍ଲାନ୍ତି ନାହିଁ ବିରକ୍ତି ନାହିଁ
ସଦା ଜାଗ୍ରତ, ପ୍ରଫୁଲ୍ଲ, ସୁବାସିତ,
ସେ ବାଣୀ ।

## ୧୦

ଭାରତର ସୀମାନ୍ତ ଯେପାଖେ ସତେ ଅବା ଅଜ୍ଞାତର ଭୂତ ଚଲ ଚଲ
ପୁଣି ଥରେ ଠିଆ,
ପୁଣି ଥରେ ପଶ୍ଚାତରେ ଆଗୁସାର
ଅସୁରକୁ ଜିଣିବାକୁ ସୁର
ସତ୍ୟକୁ ଜିଣିବାକୁ ମିଛ
ଜୀବନକୁ ମୃତ୍ୟୁ,

ପୁଣି କଂସ ଶିଶୁହତ୍ୟା କରେ
ମଧୁ ମୁର ନରକ ମହିଷ ପୁଣି ସାଜନ୍ତି ଆଜି
ସଂସାରକୁ କରିବାକୁ କ୍ରୀତଦାସ

ପୃଥିବୀର ନଗରେ ନଗରେ
ଚହଳ ପଡ଼ିଛି ।
ଭାରତରେ,—
ବ୍ଲାକ୍ ଆଉଟ୍

## ୧୧

ସ୍ୱାଧୀନତା—
ଜୀବନଠୁଁ ସେ ବଡ଼, ଆଦୃତ ଜଗତରେ,
ମୁଁ ଆଉ ମୋର ବୋଲି ସଂସାରରେ ଯାହା କିଛି,
ନିଜ ଘର, କୁଡ଼ିଆ କି ପ୍ରାସାଦ,
ନିଜ ପୁଞ୍ଜି, ଯୋଗୀଥାଳି ଅବା କୋଟିପତି ଧନ,
ନିଜର ଯେତେ ଆପଣା ମଣିଷ,
ନିଜର ପ୍ରତିଷ୍ଠା,

ନିଜ ସୁଖ, ଆରୋଗ୍ୟ କି ଶାନ୍ତି,
ସ୍ୱାଧୀନତା ତା'ଠାରୁ ବଳି,
ପିଇବା ପାଣିଠୁଁ,
ଖାଇବା ଭାତଠୁଁ,
ନିଶ୍ୱାସର ପବନଠୁଁ ।

## ୧୨.

ଯଦି,—
ଥାଇତା ନଥିବ, ନିରାପତ୍ତା ନ ଥିବ,
ମର୍ଯ୍ୟାଦା ନ ଥିବ, ମହତ ନଥିବ,
ନ ଥିବ ଖୋଲା ହାତ ଅବା ଗୋଡ଼ ।

ଅଧିକାର ନଥିବ ଆପଣା ଘର ଉପରେ ବାଡ଼ି ଗଛବୃଚ୍ଛ ଉପରେ
ଆପଣା ଦାଅଁ ଉପରେ
ଆପଣା ପିତୃପୁରୁଷଙ୍କ ମଶାଣି ଉପରେ
ଆପଣା ଶ୍ରମ ଉପରେ, ପୁରସ୍କାର ଉପରେ
ରୋଧିବାକୁ ନ ଥିବ ଶକ୍ତି ଦ୍ରୌପଦୀର ନିର୍ଯାତନା ବେଳେ,
ଜନ୍ତୁଜନ୍ତୁ ଆଖି ଖୋଲି ଦେଖୁଥିବ
ବର୍ବର କରୁଥିବ ବିକଳ ନାରୀ ଉପରେ ଧର୍ଷଣ

ପେଟରେ କ୍ଷୁଧା ଭୂଷି ଚେକୁଥିବ କଅଁଳ ଶିଶୁକୁ ଛୁଡ଼ୁଥିବ ଅଟ୍ଟହାସ
ଟିକଟିକ କରି ଫୋଡ଼ କାଟି ବନ୍ଦନାଙ୍କ କରୁଥିବ ଜୀବନ୍ତ ଦେହକୁ,
ଠାକୁର ବିଗ୍ରହ ଉପରେ
କରୁଥିବ ଅପବାଦ, ଦେଉଳ ଭାଙ୍ଗୁଥିବ,
ଶାସ୍ତ୍ରକୁ ଗୋଡ଼ରେ ଦଳି ପୋଡ଼ୁଥିବ
ବୋହି ନେଇ ଯାଉଥିବ ସବୁ ଧନ ଦରବ,
ନିଆଁ ଜାଳୁଥିବ ପୋଡ଼ୁଥିବ ଉଡ଼ୁଥିବ

ଧଳାଧଳା ହଳହଳା କରି ବାନ୍ଧି ସଙ୍ଗୀନ୍ ମୁନରେ କେଞ୍ଚ
ଜୋତା ଆଉ ବୁଟ୍‌ବୁକ୍‌ରେ ପିଟି
ଅଡ଼େଇ ନେଇଯାଉଥିବ ଶତ୍ରୁ,
କ'ଣ ହେବ ଥାଇ ସେ ଜୀବନ,
ସ୍ୱାଧୀନତାହୀନ,
ମରଣଠୁଁ ବଳି ?

## ୧୩

ଭାରତର ସତଚାଳିଶ କୋଟି
ମଣିଷ ଦେବତା
ଛୁଆ ଯୁବା ବୁଢ଼ା ବୁଢ଼ୀ ଯେତେ
ହେ ଥାଉ ଯେଉଁଠି ଆ-କୁମାରୀ ହିମାଚଳ ଭୂଖଣ୍ଡ ଆବୋରି
ସମସ୍ତେ ଏକତ୍ର, ଏକ ଉଦ୍ଦେଶ୍ୟରେ,
ରଖିବ ଅକ୍ଷୁଣ୍ଣ ଏ ମାଟିର ସ୍ୱାଧୀନତା,
ଲାଗି ଯେତେ ଯାହା ତ୍ୟାଗ ଆଉ ଶତ
ଜୀବନ ଆହୁତି
ସେମାନେ ଜାଗ୍ରତ
ଅଟଳ ପ୍ରତିଜ୍ଞ
ଏକନିଷ୍ଠ

ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ
ଭାରତମାତାକୀ ଜୟ !
ବିଜୟୀସ୍ତ ନ ପରାଜୟଃ

ହଠାତ୍ ଖେଳିଗଲା କଥା
ହିମାଳୟ ଶିଖର ଉପରୁ କୁମାରିକା ବେଳାଭୂମି ଯାକେ
ଦ୍ୱାରକାରୁ ଚନ୍ଦ୍ରଭାଗା
ଶାଳବଣୁ ଧାନବିଲଯାକେ ପର୍ବତରୁ ସମୁଦ୍ରକୂଳ
ସହରରୁ ଗଣ୍ଡ ମଫସଲ
ଝଙ୍କି ହେଲା ଗୋଟାଏ ନାଦରେ—
ଏ ଶତ୍ରୁର ନାକ କାଟ ଅଣ୍ଟାଭାଙ୍ଗ ମୁଣ୍ଡ ଛେଚ
ଏ କାଟକୁ ପିସ୍ତୁକର ଜୋତାତଳେ

ମରୁ ଏ ଅଙ୍ଗର,—ନୁହେଁ ଖାଲି ଭାରତର ଶତ୍ରୁ
ମାନବିକତାର, ଶାନ୍ତିର, ସ୍ୱାଧୀନତାର, ସଭ୍ୟତାର,
ମୁକ୍ତ ଆକାଶର, ମୁକ୍ତ ଧରଣୀର,
ଯୁଗଯୁଗର ହଜିତ ସଂସ୍କୃତିର,
ସ୍ନେହ ପ୍ରୀତି ଭାଇପଣ ବିଶ୍ୱାସ ଓ ମର୍ଯ୍ୟାଦାର
କ୍ଷିତ୍ ଅପ୍ ମରୁତ୍ ତେଜ ବ୍ୟୋମମୟ ଈଶ୍ୱର ସୃଷ୍ଟିର,
ବର୍ତ୍ତମାନ ଓ ଭବିଷ୍ୟତର
ଶତ୍ରୁ

ରୋକ ତାକୁ କର ତାକୁ ଧ୍ୱଂସ
ଆଗ ଯୁଦ୍ଧଜୟ ଆଗ ଏଇ ବିଷ ନାଶ
ପଛେ ଆନ କଥା,
ମାଭୈଃ ଚାଲ
ଜୟ ଜନ୍ମଭୂମି

ଧାଇଁ ଧାଇଁ ପଛୁଆରେ ଝୁଲିଲେ ଏ ଭାରତର ବାହାଦୁର
ଜଓ୍ୱାନ୍ ଦଳଦଳ
ଲେଖିବାକୁ ନିଜ ନାଆଁ ଅମର ଅକ୍ଷରେ ଇତିହାସ ପୃଷ୍ଠାପରେ
ରଚିବାକୁ ଶୌର୍ଯ୍ୟ ପରେ ବୀରତ୍ୱର ଗାଥା
ରଖିବାକୁ ଉଚ୍ଚ ମୁଣ୍ଡ
ଏ ଦେଶର, ଏ ଜାତିର, ଏ ଇତିହାସର,
ଆପଣାର ରକ୍ତ ଦେଇ ।

୧୪

ଯେଉଁମାନେ, ଗଢ଼ିଥିଲେ ଏ ପ୍ରାଚୀନ ଦେଶକୁ ,
କେତେ କେତେ ତପୋବନେ
ପାଇଥିଲେ ଏ ଅମୃତ ସମୁଦ୍ର ମନ୍ଥନ କରି ଯାତନାର ପାଣିତନ୍ତ୍ର
ଯଜ୍ଞକରି, ତ୍ୟାଗଦେଇ, ଶ୍ରମଝାଳେ ପଥରକୁ ମାଟିକରି ସଜାଇଲେ
ଏ କେଦାରମାଳ
ଫୁଟାଇଲେ ଏଥି ଫୁଲ ସଜାଇଲେ ଏ ଉଦ୍ୟାନରାଜି
ବଢ଼ାଇଲେ ଏ ସଭ୍ୟତା କେତେ ତ୍ୟାଗ କେତେ କଷ୍ଟ ସହି
ଗଢ଼ିଲେ ଗରିମାମୟ ଇତିହାସ ଏ ଦେଶର
ଜୀବନ ଜୀବନ ଲାଗି
ଗଢ଼ିଗଲେ ଶ୍ରେଷ୍ଠତମ ମାନବ ସଭ୍ୟତା
ସେ ଦେବତା ସେହି ଋଷି ସେ ଋଷିମାନେ
ମାଗିଥିଲେ ବର ସ୍ରଷ୍ଟାପାଖେ

“ଯାଉ ପଛେ ଯେତେ ଯୁଗ
ଆଜ ଅବା କଳ୍ପ କଳ୍ପାନ୍ତରେ
ମୋ ବଂଶରେ ଜନ୍ମହେଉ ପିଲା
ଶୌର୍ଯ୍ୟ ବୀର୍ଯ୍ୟ ସୂର୍ଯ୍ୟସମ
ମୋ ବଂଶ ଉଜ୍ଜ୍ୱଳ ହେବ”

ଯେନ୍ତ ବର ଫଳଗଲା ସତେ
ଭାରତର ଘରେ ଘରେ
ଉଠିଲେ ଜଓ୍ୱାନ୍ ।

## ୧୭

କଏସେ ଏମାନେ ? କାହିଁ ଥିଲେ ?
ଆଖି ମଳମଳ ଝୁହେଁ ଶତ୍ରୁ
ଝୁହେଁ ଆଜ ଭାଇଚୁଏ,
ଝାଳ ପୋଛେ,
ଛୁଡ଼ ତାର କମ୍ପେ ଦୁଲୁଦୁଲୁ ,

ସେଇ ତ ନୁହେଁ ନଙ୍ଗଳା ଫକୀର ଦଳ
ପରିଧାନେ ଖଦଡ ଗାମୁଛା ଖାଲିପାଦ ବଡା କଣ୍ଠା ଖେଳ ଦେହ
ପିଠା-ମୁହେଁ ମିଠା ହସ ଶାନ୍ତ ଆଖି
କହେ ଖାଲି ସତ୍ୟ ଓ ଅହିଂସା
ତ୍ୟାଗ ତପସ୍ୟାର କଥା

ଯୋଡ଼ା ହାତ ଟେକେ ଉପରକୁ ନିଶ୍ୱାସରେ ଭଜେ ରାମନାମ
ସେଇ ତ ନୁହେଁ ଠେକାବନ୍ଧା କପାଳରେ ଚିତା କାନରେ କୁଣ୍ଡଳ
କାନ୍ଧରେ ଉତ୍ତରୀ
ଗୋଟାମୁଣ୍ଡା ଧଳା ଜାଉଳା ସଂସ୍କୃତ ବିଦ୍ୟା
ଅନର୍ଗଳ ମନ୍ତ୍ରସ୍ରାବୀ
ଗୋଟା ଗୋଟା ମୋଟାବନ୍ଧା ଦର୍ଶନ ଶାସ୍ତ୍ରର ବେଦୋପନିଷଦ ଖଣି

ସେଇ ତ ନୁହେଁ ଡିଆରୁଟି ପେଟ ଥଲଥଲ ଗଳିସଇଁ ଢିବି ଦେଇ ବାଡ଼
ସେଇ ନୁହେଁ ତ ଗାଈ ନୁହେଁ ମାଈ ନୁହେଁ ହରୁଡ଼ା ମଣିଷ
ହାସ୍ୟ କଲେ ରାଗେ
ମୁଣ୍ଡଖାଳ ଭୁଣ୍ଡିମାର ସେବ ଗୋରୁ ଓ ବ୍ରାହ୍ମଣ ଦେବତାଙ୍କୁ
ଭୋଗ ଯାଚ
ମାଡ଼ ଗାଳ ନିର୍ଯାତନା ସହେ କହେ "କର୍ମର କଷଣ—
ଅରଣ୍ୟରେ ଅଜଗର ପରି ଏ ଜୀବନ"

ଆଖିବୁଜି ସ୍ୱପ୍ନ ଦେଖେ ମିଛୁଆ ଜ୍ୟୋତିଷ ଗଢ଼ା ଚନ୍ଦ୍ରଜନମର

ସେ ତ ନୁହେଁ ମନସାପ କମାଖି ବଧବା ଫଟା ଢୋଲ
ଗଣ୍ଠି ଛିଣ୍ଡା କାଠିବଢ଼ା
ନୁହଁନ୍ତି ଏ କଳକର ଶୁକୁଟା କୁକୁଡ଼ା ପଲ ଅଟେଇ ଉତରେ
ଦ' ଦ' ଜଣେ ଲଗିଥାନ୍ତି ପିଏ ଖୁମ୍ପାଖୁମ୍ପି ରକ୍ତାରକ୍ତି ହୋଇ
ଜାତି-କଳି ଧର୍ମ-କଳି ଭାଷା-କଳି ସୀମା-କଳି ମତ-କଳି
ଆଜି ଯେତେ କଳି
ଫାନ୍ଦ ହେବ ସ୍ୱପ୍ନେ ପେଟେ ଯଦି ଥିବ ଅଗ୍ନିମାନ୍ଦ୍ୟ

ସେ ତ ନୁହେଁ ସେହି ଜନ
ଅଠରବରଷଯାକେ ଯେତେ ତାଙ୍କୁ କରୁଥିଲେ ଦ୍ରୋହ
କହୁଥିବ ସ୍ନେହଭରେ "ଥାଅ ଥାଅ ଭାଇ
ଘେନ ମୋ ବଚନ ଆଜ ନହୁଅ ଅଝଟ
ଘେନ ମୋଠୁଁ ସିନ୍ଧୁନଦୀ ପାଣି କର ଚାଷ ବଢ଼ାଅ ସମ୍ପଦ
ପଡ଼ିଲେ ବଢ଼ି ମରୁଡ଼ି ଦେବ ମୁଁ ସାହାଯ୍ୟ
ଶତ୍ରୁ ଆମ ଦରିଦ୍ରତା ଅଜ୍ଞାନ ଅନ୍ଧାର ଅତ୍ୟାଚାର ଶୋଷଣ ପେଷଣ
ତୁମେ ଆମେ ନୋହୁଁ ଶତ୍ରୁ !"

ଏ ନୁହେଁରେ ସେ ଭାବୁକ ସେହି ସ୍ୱପ୍ନବାଦୀ
ଗଙ୍ଗାଜଳେ ସ୍ନାନସାରି ଗଳବସ୍ତ୍ର ହୋଇ
ସକାଳ ସୂର୍ଯ୍ୟକୁ ଟେକେ ପାଣି ପଢ଼େ ମନ୍ତ୍ର,
ଗୋଡ଼ମାଟି ପଥରକୁ ପଡ଼େ ଲମ୍ବଲମ୍ବ ଦୁବଘାସ ମୁଣ୍ଡେ ଥୁଏ
ସେ ନୁହେଁ ଯା'ଥିଲା ଭାବ !
କିଏ ସେ ସେ !

୧୬

ଜାଣିଥିଲା ପାକିସ୍ତାନ ସରକାର—
ଦୁନିଆ ଯାକରେ—
ଶୁଭେ ଯେତେବେଳେ ଚାରିଆଡ଼ୁ ରଣଭେରୀ

ସ୍ତବ୍ଧକର ତୋଫାନ ଶବ୍ଦ
ଶୁଭେ ଚେହାଚେହି ଡକାଡକି ହୁଂକୃତି ଚିତ୍କାର
ମାରଣାସ୍ତ୍ର ହୁଏ ଲଦାଲଦି,

ଭାରତ ବିଶ୍ୱାସ ରଖେ—
ହେବ ଦିନେ ସତ୍ୟଯୁଗ
ନ ରହିବ ଯୁଦ୍ଧ କି ଅଶାନ୍ତି,

ଭାରତ ବିଶ୍ୱାସ ରଖେ,
ଦିନୁଁ ଦିନ ମଣିଷ ଅନ୍ତରେ ପ୍ରକଟେ ସତ୍ୟର ତେଜ
ନାଗଫେଣୀ ହେଲା କଣ୍ଟାହୀନ
ଶାଗ ହେବ ବାଘର ଆହାର
ମଣିଷ ହୃଦୟ-ବନ ଦିନେ ହେବ ସରଗର ନନ୍ଦନକାନନ
ପାରିଜାତ ପୁଷ୍ପମୟ ଶାନ୍ତି ମୈତ୍ରୀ ବିଶ୍ୱାସ ଓ ସ୍ନେହ ମହମହ
ଏ ଜଗତ ହେବ ଏକ କୋଠଘର
ଏକ ପରିବାର

ଜୀବନର ମୂଲ୍ୟ ହେବ ସ୍ୱାର୍ଥହୀନ ସେବା ଆଉ ତ୍ୟାଗର ତଉଲେ
ଉଡ଼ୁଥିବ ଫରଫର
ସତ୍ୟ ଆଉ ଅହିଂସାର ଧ୍ୱଜା ଶ୍ରମ ଆଉ ପ୍ରେମର ପବନେ
ସବୁ ଧର୍ମ ସବୁ ଶାସ୍ତ୍ର
ସମାନ ଆଦରଣୀୟ
ଆଲ୍ଲା ଆଉ ଈଶ୍ୱର ଅଭିନ୍ନ
ରାଷ୍ଟ୍ର ତାର ଧର୍ମ ନିରପେକ୍ଷ
ପୂଜୁ ଯେ ଯେପରି ମନ ଯାହାକୁ ଯା ଇଚ୍ଛି ।

ପାକିସ୍ଥାନ ହରକାର ଜାଣିଥିଲା, ଭାରତ ଦେଇଛି ପ୍ରତ୍ୟେକ ବ୍ୟକ୍ତିକୁ
ନିର୍ଭୟେ ସ୍ୱାଧୀନ ବାଣୀ ସ୍ୱାଧୀନ ମତ ଆଉ ବିଶ୍ୱରର ପୂର୍ଣ୍ଣ ଅଧିକାର
ପୃଥିବୀରେ ପୂର୍ଣ୍ଣତମ ସ୍ୱାଧୀନତା,

ଭାବଥିଲା ଯଦ୍ୱାରା ଅର୍ଥ ହୁଅନ୍ତା ତ ଏବ୍ବ
ରାଷ୍ଟ୍ରପତି ଆୟୁବ୍ ଖାଁ ଓ ଆଜି କେଉଁ ମଜୁରିଆ ଆୟୁବ୍ ମିଆଁର
ହୋଇଥାନ୍ତା ସମାନ ଭୋଟ ଅଧିକାର !
କେଜ୍ବ କେବେ ରଖିଥିଲା ରାଷ୍ଟ୍ର ଏ ମାତ୍ରରେ !

ପାକିସ୍ଥାନ ସରକାର ଭାବିଥିଲା,
ଭାରତ ଦୁର୍ବଳ, ସ୍ୱପ୍ନବାଦୀ ମୋକ୍ଷଖୋଜା ଡରକୁଳା
ମଣିଷଙ୍କ ଦେଶ, ଅବାସ୍ତବ କଳ୍ପନା ଓ ଯୋଜନାର ।
ଅଠର ବରଷ କାଳ କରି ଆୟୋଜନ, ନାନା ଛଳେ,
ଠକିକରି ଆମେରିକା ଗଢ଼ା ଅସ୍ତ୍ରଶସ୍ତ୍ର,
ଚୀନାରୁ ସାହସ ପାଇ,
ହଠାତ୍ କରିଥିଲା ଭାରତକୁ ଆକ୍ରମଣ—

"ଏଇ ତ ସୁଯୋଗ ଚେତେ, ପଡ଼ିଛି ପାଳକ
ଗୁମ୍ଫ ଜଉରିଆଁ ହାଡ଼େ
ଧରିତ କାମୁଡ଼ ମୂଷା
ଆଜ ଭିତରକୁ, କାମୁଡ଼ି କାମୁଡ଼ି କାଟ, ଖାଇଯାଅ ଗିଳିଯାଅ,
ଜମ୍ଭଗୋଳା ପାଉଁରୁଟି କାମୁଡ଼ିଲା ଭେବାଇଲା ଭଳି

ତା'ପରେ—
ଦିଲ୍ଲୀ କେତେଦୂର
ହାଜିଆ ଖାଇଲା ପରି ସଞ୍ଜବେଳ ବୁଲାପରି ଆରାମରେ ଟହଲି ଟହଲି
ପହଞ୍ଚିବା ଦିଲ୍ଲୀର ଗୁମ୍ବଜରେ"

ଉଡ଼ୁଥିଲେ ପାକିସ୍ଥାନ୍ ନେତା,
ସତ୍‌ଭୁଲଣ କୋଟି
କଇଦ କରିବା ପାଇଁ
ଗଣୁଥିଲେ ମୁଣ୍ଡ,
ଆଗତ ଚଢ଼େଇ ପାଇଁ ବାଛୁଥିଲେ ସୁପତନେ
ଆଖ୍‌ରୋଟ୍ ବାଦାମ୍ ପେସ୍ତା

ଅଳେଇଚ ପୋସ୍ତଦାନା ରସୁଣ ପିଆଜ ଲଙ୍କା
ନାନାଦ୍ରବ୍ୟ ଦେଇ
ବେସର ।

ଭୁଣ୍ଡୁଁ ତାଙ୍କ ବନ୍ଧୁଥିଲା ଲଳ
ଯୋଗୁଥିଲେ ଅଠାକାଠି ଖଞ୍ଜି ଖଞ୍ଜି
ଆମେରିକା ଅସ୍ତ୍ରଦେଇ ଖଞ୍ଜି ତର୍ଜ୍ଜ ଚୀନାର ବାରୁଦ
ସାବାସ୍ ସାବାସ୍ କହୁଥିଲେ ତାଙ୍କ ମୈତ୍ର ଇନ୍ଦୋନେସିଆର ସୁକର୍ଣ୍ଣ
କ୍ୟାବାତ୍ କ୍ୟାବାତ୍ କହୁଥିଲେ ଆଉଜଣେ ସଖା ଜୋରଡ଼ାନ୍ ଶାର ।

୧୮

ଝୁଙ୍କିଥିଲା ବ୍ରିଟିଶ୍ କେଶରୀ, ଟିକିଏ ବୁଢ଼ା, ଘୁମମାତ୍ରେ
ମହାଯୁଦ୍ଧ ପରେ ଯେତେ କ୍ଷତବିକ୍ଷତ ଭରେନାହିଁ ଆହା,
ରହିଛି ତଥାପି ରଡ଼ି
ଅଛିତର ତାଳପତ୍ର ଭଉଁରିଆ ଯଦ୍ଦତ ସେ ଶାଟଦ୍ରୋଂଷ୍ଟ

ଝୁଙ୍କିଥିଲା ବ୍ରିଟିଶ୍ କେଶରୀ
ନେଲା ଆଖି ଖୋଲି ହୁଏନାହିଁ
ପଶିଲେ କାଶ୍ମୀରେ ଦଳଦଳ ଅସ୍ତ୍ରଶସ୍ତ୍ରଧାରୀ ଛଦ୍ମବେଶୀ ଡକାଏତ୍
ଅତର୍କିତେ ପଶିଗଲେ ପାକସ୍ଥାନୀ ଗୃରିକୋଶ ବାଟ ଛମ୍ବ୍
ଜଉରିଆଁ ବାଟେ
ଟ୍ୟାଂକ୍ ମାଳ ଧରି ସତେ କି ହିଟ୍‌ଲରୀ ଦଳ ଆଗରେ ରେମେଲ୍
ସତ୍ରୁକରି ରଡ଼ିଟିଏ ଦେଲା
ଦେଖିଲା ଯେବେ ସେ
ଭାରତର ଯଜ୍ଞବେଦୀ ହୋମକୁଣ୍ଡତନ୍ତୁ ଉଠିଲା ପ୍ରଳୟ ରୁଦ୍ର
ତଡ଼ାକୁ ଉତ୍ତର ଦେଲା ସିଆଲକୋଟ୍ ରଣାଙ୍ଗନେ
ପଠାଣକୋଟ୍‌ରେ, ଅଟଓ୍ୱାଲ୍ ଘାଟିରେ, ଗଲା ହାଜିପୀର ଘାଟି,
ଗଲା ଉରୀ, ପୁଞ୍ଚ୍, ଓ୍ୱାଘ୍, ଗାହ୍ରା, ବୁର୍କି, ଚୁସୁଲ, କାଶୁର୍, ପାଣ୍ଡୁର୍
ଲାହୋର୍ ବେକ୍ ରହିଲା ଭାରତ ମୁଠାରେ ।

## ୧୯

ଆମେରିକା ଅନୁରୋଧ କଲା ଭାରତକୁ
ଲାହୋର ବିମାନଘାଟି ବାଟେ ଉଦ୍ଧରିଲାବେଳେ ପାକସ୍ଥାନୁଁ
ଆମେରିକାବାସୀ
ଭାରତ ନ କରୁ ଗୁଳି
ତଥାଽସ୍ତୁ କହେ ଭାରତ ।

ୱାଘା ନଦୀଜଳେ ପୁଣି ଇଚଗିଲ୍ କେନାଲର ଜଳେ
ଧୂଏ ଶତ୍ରୁରକ୍ତମଖା ଉଗ୍ର ତରବାରି ଭାରତ ଜଓ୍ୱାନ୍
ବିସ୍ମୟ ପୁଲକେ, ଜଗତ ଅନାଏ ତାକୁ କହେ ବାହାଦୁର୍
ଶାହାନ୍‌ଦାର୍
ଜଗତର ରଣ ଇତିହାସେ ଦେଖାନାହିଁ ଏ ସାହସ ଏ କୌଶଳ
ଏଭଳି ବୀରତ୍ୱ
ଶୁଣାନାହିଁ ଜଣାନାହିଁ ମାଳ ମାଳ ପ୍ୟାଟନ୍ ଟ୍ୟାଙ୍କ୍ ଦୁର୍ଦ୍ଧର୍ଷ ଅଜେୟ
ଆଧୁନିକତମ ମୂର୍ତ୍ତିମାନ ବିଭୀଷିକା
ବିଜ୍ଞାନରେ ଖଞ୍ଜାଖଞ୍ଜି ଲୁହା ଖାମ ହୋଇବାରେ ଗୁଣ୍ଡା
ସତେ ଅବା ଏକ ଏକ ଖୁପୁଡ଼ାରେ
ପଡ଼ିଛି ସେ ଧ୍ୱଂସକୃତ ସିଆଲକୋଟ୍ କାଶୁର୍ ରଣଭୂମେ
ଲାହୋର ଉପାନ୍ତେ
ନାନା ସ୍ଥାନେ କେଉଁ ଅଣେ ବଣେ ଦଉପୋଡ଼ା ଆଖୁକ୍ଷେତେ,
ଦେଖ୍ ତୋ ପ୍ୟାଟନ୍ ଟ୍ୟାଙ୍କ୍ ।

ଆମେରିକା ଦାନେ
ଚୀନା ସାହାପଣେ
ଥିଲା ଶତ୍ରୁ ଆଧୁନିକତମ ଅସ୍ତ୍ରଶସ୍ତ୍ରେ ସୁସଜ୍ଜିତ ବିକଟ ବପୁଳେ
ଗଢ଼ିଥିଲା ଆମେରିକା ସାର୍ଗୋଦା ବିମାନଘାଟି ବର୍ଷବର୍ଷ ଲାଗି
ଲୁହା କଂକ୍ରିଟ୍ ଆଜ ତୋପ ଦନୁରତ ବଡ଼ାର୍ କବଚମସ୍ତ,
ଉଭା ଯେତେ

ପୋତା ଘର ତା'ର କେତେ ଗୁଣ
ଏସିଆରେ ମାର୍କିନ୍‌ର ଶ୍ରେଷ୍ଠତମ ଗଡ଼
ମରଣ ଅନୁଡ଼ଶାଳ
ଜଗତ ଉଜୁଡ଼ା କୁତ୍ସିତ ସେବର୍ ଜେଟ୍ ଛଞ୍ଚାଣର ମାଡ଼
ସମତୁଲ ଥିଲା ଖାଲି ଅତୀତରେ ମହାଯୁଦ୍ଧ ବେଳେ
ଜର୍ମାନ୍ ବିମାନ ଘାଟି—

ଆଜି କେତେ କେତେ ଥିଲା
ଶତ୍ରୁର ବିମାନ ଘାଟି
ରାଡ଼ାର୍ ଷ୍ଟେସନ, ଭାରତର ଆକାଶକୁ ଦେଖିବାକୁ
ଅଦେଖା ତୃତୀୟ ଆଖି
ଥିଲା ପଲପଲ
ଆମେରିକା ଗଢ଼ା
ଦୁର୍ଦ୍ଧର୍ଷ ସେବର୍ ଜେଟ୍ ଲଢ଼ୁଆ ବିମାନ
ଶବ୍ଦ ଆଗେ ବେଗେ ବେଗେ ଧାଏଁ ଘଣ୍ଟାକୁ ନଅଶ କୋଶ
ଆଖି ପିଛୁଡ଼ାକେ କାହିଁ ଉଠେ,

ବହୁମୂଲ୍ୟ ଅତି ଆଧୁନିକ
ଝଞ୍ଜା ସେଥି ନାନା ବୈଜ୍ଞାନିକ ଯନ୍ତ୍ରପାତି
ଅଭିନବ ଟେଲିସ୍କୋପ୍ ଆଖି ଦେଖିପାରେ ଶୂନ୍ୟେ ଶୂନ୍ୟେ
ଯୋଜନ ଯୋଜନ
ଡିଗ୍ରୀଗଣି ଲକ୍ଷ୍ୟସ୍ଥଳ କରିଲେ ଚିହ୍ନିତ ବନ୍ଧୁକ ଅବ୍ୟର୍ଥ ଲକ୍ଷ୍ୟ
ରକେଟ୍ କି ପଡ଼ନ୍ତା ବୋମାରେ କି ଅବା କଳ କମାଣେ
ଜାଳିପାରେ ଧ୍ୱଂସ କରିପାରେ ନିମିଷକେ କୋଠାବାଡ଼ି ସହର ଶିବିର
ଜନବହୁଳ ବସତି
ଶକ୍ତିଶାଳୀ ଅଙ୍କାଶୀ ଆତଙ୍କ ମାରଣର ବିଜୁଳି ଚଢ଼େଇ
ମେଘ ଚିରି ଗାର କାଟେ
ସାଇଁ ସାଇଁ ଛୁଟିଆସେ କରେ ବୋମା ବୃଷ୍ଟି,
ଫୋପାଡ଼ି ପଳାଇଯାଏ ପୁଣି ଆସିବାକୁ ।

ସେଇ ଥିଲା ଅମୋଘାସ୍ତ୍ର ପାକସ୍ଥାନ ହାତେ, ଭାରତର ନାହିଁ,
ପ୍ୟାଟନ୍ ଟ୍ୟାଙ୍କ୍ ଆଉ ସେବର୍ ଜେଟ୍,
ସେଥିପାଇଁ ଏତେ ଦର୍ପ !

## ୨୦

କାହିଁଗଲେ ସେବର୍ ଜେଟ୍ ହଂସଗଣ
କେଉଁ ମାନସସରୋବରରେ କି ଅବା ଯମପୁରରେ !
କାହିଁ ତାଙ୍କ ବଜ୍ର ମୁଣ୍ଡ
କି ହେଲା ସାର୍‌ଗୋଧା
କ'ଣ କଲେ ଏତେ ବୋମାମାଡ଼ କରି କ'ଣ ଧ୍ୱଂସ କଲେ
ଏତେ କ୍ଷୟକ୍ଷତି ସହି ?

ସେ ଏକ ବିସ୍ମୟ
ବୈମାନିକ ଇତିହାସେ ଟ୍ୟାଙ୍କ-ଧ୍ୱଂସୀ ଯୁଦ୍ଧ ପରି ସେ ଏକ ଗାଥା
ଭାରତର ଆକାଶୀ-ପଦାତିକ-ବୀର ଭଲେ
ପୃଥିବୀରେ ଅଜଣା ଅଶୁଣା
ବୀରତ୍ୱ ଓ କୌଶଳର ଅମଳାନ ଜୟଟିକା
ସେ ବିସ୍ମୟ ଭୁଲିନାହିଁ ଏ ପୃଥିବୀ କୁହାକୋହି ହୁଏ

ନଥିଲା ତ ସେବର୍ ଜେଟ୍ ଭାରତ ହାତରେ
ଖାଲି ସାନସାନ ମଶକ-ବିମାନ କିଛି ବଂଗାଲୋର ଗଢ଼ା
ଆଜି ବିଦେଶୀ ବିମାନ ଅଳ୍ପ
ନୁହେଁ ସେତେ ଦ୍ରୁତଗାମୀ
ତଳେ ତଳେ ଉଡ଼େ
ସହଜରେ ଲକ୍ଷ ହୋଇପାରେ ଶତ୍ରୁର ବିମାନଧ୍ୱଂସୀ କମାଣ ଗୁଳାର,

ହେଲା କାହିଁ ?
ଯେତେ ଶକ୍ତିଶାଳୀ ହେଉ ଯନ୍ତ୍ର ନୁହେଁ ମଣିଷଠୁଁ ବଡ଼,
କାମ କରେ ଯେଉଁ ଛାତି ଯେଉଁ ହାତ ଯେଉଁ ମୁଣ୍ଡ ଯନ୍ତ୍ର ପଛଆଡ଼େ

ଯେ ବୀରତ୍ୱ ଯେଉଁ ଆତ୍ମତ୍ୟାଗ
ଶିକ୍ଷିତ ସଂଯତ ମନ
ଯନ୍ତ୍ରକୁ ସେ ବଳ ଦିଏ, କାଇଁଶିକା ଶର କରେ ସୁଦର୍ଶନ ଚକ୍ରେ ପରାହତ

ସେବର ଜେଟ୍ ଜଳ ଜଳ ଖସି ପଡ଼େ
ଭାରତର ମଶକ ବିମାନ ଗ୍ନେଟେ
ଦୂର ନୁହେଁ ଅତି ପାଖୁଁ
କ୍ଷିପ୍ରଗାମୀ ଦୂରଗାମୀ ମାରଣ ବିମାନ ଧାପ ଫୁଟୁକ ଉଡାଇ
ଦେଖାଇ ତା' ରକେଟ୍ ବୋମା ମେସିନ୍‌ଗନ୍ ଗୁଳି ଉଦ୍‌ଗାରକୁ
ନିର୍ଭୟରେ ବୃଦ୍ଧାଙ୍ଗୁଷ୍ଠି

ଅତି କତି କତି ହୋଇ ଲଞ୍ଚପଟୁ ମୁଣ୍ଡପଟୁ ଅବା
ମୃତ୍ୟୁ ଦେବତାକୁ ସ୍ତବ୍ଧ କରି ମୃତ୍ୟୁଞ୍ଜୟୀ ଭାରତୀୟ ବୀର
ତିନେଶ ପାଞ୍ଚଶ ଗଜୁଁ ମାରେ ଗୁଳି
ଅଦ୍ଭୁତ କୌଶଳେ
ନାନା ଖଞ୍ଜେ ଚଳନ ପହଁର
ଧ୍ୱଂସ ହୁଏ ସେବର୍ ଜେଟ୍
ଖସି ପଡ଼େ ଜଳ ଜଳ ଖଣ୍ଡ ଖଣ୍ଡ ହୋଇ

ଅଥବା କେ ଧଇତନ୍ତୁ ଉଡ଼ାଏ ତା' ଆଡ଼େ
ଖାଲି ଲାଇଟ୍ ମେସିନ୍‌ଗନ୍
କୌଶଳରେ ଲକ୍ଷ କରେ ଉତ୍ସୁକ ଆଖିରେ
ସତେ ଅବା ନୁହେଁ ସେ ସେବରୁ ଜେଟ୍
ମାରଣା ବିମାନ ଯେତେ ଜାତି ସବୁଠୁଁ ବଢ଼ିଆ ସବୁଠାରୁ
ଅତି ଭୟଙ୍କର
ନିମେଷକେ ଜାଳପାରେ ତାଳ ବଜ୍ର ଭୂକମ୍ପ ଓ ନିଆଁ
ବୀର ଭାରତୀୟ,
ତାହା ତଳେ ଶିର ଟେକ ନିର୍ଭୀକ ଅଟଳ
ସୁମର ତା' ଦେଶ ଭାଇ ମୁହିଁ ଦେଶମାତା ଚରଣ କମଳ

ମାରେ ଲାଇଟ୍ ମେସିନ୍‌ଗନ୍
ଅସମ୍ଭବ ହୁଅଇ ସମ୍ଭବ
ଝଡ଼ପଡ଼େ ସେବର୍‌ ଜେଟ୍
ରଣ ଇତିହାସେ ଲେଖା ହୁଏ ନୂଆ କଥା
ଜଗତ ବିସ୍ମୟେ ହସେ—ଦେଖ ଦେଖ ବଜ୍ର ମୁଷ୍ଟି ଟାଣ ମନ ଦେଶପ୍ରାଣ
ଏ ଦେଶ ଜଓ୍ବାନ୍
ସତେ ଅବା ବାଟ୍‌ଲି ଖଡ଼ାରେ ଭାଙ୍ଗେ ଆକାଶର ଲଞ୍ଜାତାରା ।

## ୨୧

ପାକସ୍ଥାନ୍ କରେ ଚେଷ୍ଟା ବାରମ୍ବାର ବାରମ୍ବାର
ବୋମିବାକୁ ଭାରତର ବିମାନଘାଟି କଲେଇକୁଣ୍ଡା ଯୋଧପୁର
ଅମ୍ବାଲା ଅମୃତସର ଆଦମ୍‌ପୁର ଜାମ୍‌ନଗର
ଆଉ କେତେ ରଣସ୍ଥଳୀ
ବୋମିବାକୁ ପ୍ରତିରକ୍ଷା ଗଡ଼ ଅସ୍ତ୍ରାଗାର ସଇନିଶିବିର
ଗୋଟି ଗୋଟି ସବୁ ଆକ୍ରମଣ ପ୍ରତିହତ ହୁଏ
ଆକାଶେ ପାଶଧି କରେ ଭାରତ ବିମାନ ଦଳ
ମଶକ, ହଣ୍ଟର ମିଷ୍ଟେୟାର୍ ଆଦି
ସୁରକ୍ଷିତ ଘାଟି ପାଶରୁ ଗରଜେ ବିମାନଧ୍ୱଂସୀ କମାଣର ସିଂହନାଦ
ଧ୍ୱଂସହୁଏ ବୋମାବାହୀ ପାକସ୍ଥାନୀ ବିମାନ ଛଞ୍ଚାଣ
ପୃଷ୍ଠଭଙ୍ଗ ଦେଇ ବୃନ୍ଦେ ହୁଏ ଅନ୍ତର୍ହିତ ଆଜ ଯେତେ ବମ୍ବର ସେବର୍
ପ୍ରତାରଣା ଛଳେ ଯେତେ ଆଣିଥିଲା ଆମେରିକାଠାରୁ
ବିମାନ ଓ ପ୍ୟାଟନ୍‌ଟ୍ୟାଙ୍କ୍ ଚୀନକୁ ରୋଧିବ ବୋଲି ମିଛକହି
ନ ଲାଗିଲା କାମେ
ଯାଏ ଫାଟି ଯାଏ ଲୋଟି ଭାରତର ପ୍ରଚଣ୍ଡ ମାଡ଼ରେ

ଥର ଥର ଶତ୍ରୁ ହାତୁଁ ଏଣେ ତେଣେ ପଡ଼େ ବୋମା ଜାଳେ
ଫାଟେ ବସୁଧା ଉପରେ
କାହିଁ କେଉଁ ଗହମ କ୍ଷେତ ଆଖୁକ୍ଷେତ ବାଜରାକ୍ଷେତ ଜାଳେ

ଜଳନ୍ଧରଠେ କେଉଁ ଟାଳଗଦା
ଫାଇଁ ଫାଇଁ ଜଂଳ ପାଇନ୍ ବଣ
ବୋମା ପଡ଼େ ନଷ୍ଟ ଚୋଖସ୍ରେ ମାଛମରେ
ବୋମା ପଡ଼େ ମେଣ୍ଢାଶାଳ ଛେଳି ଆଉ ଗୋରୁ ଗୁହାଳରେ
କେଉଁ ଶାନ୍ତ କୃଷକାଳୀ ପଲ୍ଲୀ
ଅନ୍ଧ ବୋମା ଆକାଶରେ ହୁଏ ଭସ୍ମୀଭୂତ
ବତାଇ ପ୍ରକଟ କରେ ପାକସ୍ଥାନୀ ବୀରତ୍ୱର ରଣ କୌଶଳର
ପାକ୍ ରେଡ଼ିଓ ଗାଏ ବାଆସ୍ତର ଗାଲଗଂଫା ଗାଥା
ଧନ୍ୟ ଆୟୁବ୍ ଧନ୍ୟ ଭୁଟ୍ଟୋ ଧନ୍ୟ ମୂଷା ଧନ୍ୟ ନୂର୍ ଆଉ ଆସ୍‌ଗର
ଧନ୍ୟ ଧନ୍ୟ ପାକସ୍ଥାନ ବିମାନର ଅପୂର୍ବ କୌଶଳ
ଭାଙ୍ଗିଅଛୁଁ ବୋମାମାଡ଼େ ହିନ୍ଦୁସ୍ଥାନର ଶହଶହ ରଣଘାଟି
ପୋଡ଼ିଅଛୁଁ ବୋମାମାଡ଼େ ହିନ୍ଦୁସ୍ଥାନର ଅସଂଖ୍ୟ ବିମାନ
ଆପଣା ଆଖିରେ ଆସିଥିଲୁଁ ଦେଖି ନିଆଁ ଜଳୁଥିଲା
ସେବର ଜେଟ୍ କଲା କାମ
ନାହିଁ ଆଉ ବାକି ।

ପାକସ୍ଥାନ୍
ଛୁଡ଼ିଲା ଦୁର୍ଦଶା
ବୋମାମାଡ଼େ ଭାଙ୍ଗିବାକୁ ଭାରତ ବିମାନ-ଘାଟି ଅସ୍ତ୍ରାଗାର
ସୈନିକ ଶିବିର
ବୋମା-ବଳେ କରିବାକୁ କାବୁ ଭାରତ ଜଓ୍ୱାନ୍ ଥାଟ
ଛାଡ଼ିଲେ ପରିଚାକ ପରି ମରଣ ସମରେ.
ପ୍ୟାଟନ୍ ଟ୍ୟାଙ୍କ୍ ପଛେ ପଛେ
କମାଣ ଓ ତୋପମସ୍ତ ଜଙ୍ଗଲ୍ ଉହାଡ଼େ
ମୁହିଁଏଁ ପତଙ୍ଗ ପରି ହଜାର ହଜାର ସୈନ୍ୟ

୨୨

ଥିଲେ ପାକସ୍ଥାନୀ ଥାଟେ, କେତେ ଏଭଳି ସୈନିକ
ଗୌରବ ଅରଜିଥିଲେ ପୃଥିବୀର ନାନା ରଣକ୍ଷେତ୍ରେ ଗଲା
ମହାଯୁଦ୍ଧ ବେଳେ
ଯେତେବେଳେ ବ୍ରିଟିଶ୍ ସେନାରେ ଲଢ଼ୁଥିଲେ ପାଖ ପାଖ
କାନ୍ଧ କାନ୍ଧ ହୋଇ

ଏକ ଭାରତୀୟ ସେନା,
ପାକିସ୍ଥାନ୍ ନାଁ ବି ନଥିଲା,

ଅନନ୍ତ ଚହିଁରେ ସେ ଦୁର୍ଦ୍ଧର୍ଷ ବେଲୁଚି ସେନାନୀ
ସେକାଳର ସୀମାନ୍ତ ବାହିନୀ
ଭାରତୀୟ ଅଫିସରଙ୍କର
ଉଜ୍ଜୀବନୀ ବୁଦ୍ଧିମନ୍ତ ଦୂରଦର୍ଶୀ ଅମୋଘ ନେତୃତ୍ୱ
ଦେଖାଇଥିଲେ ଶୌର୍ଯ୍ୟ ଇଜିପ୍ଟ କି ଇଣ୍ଡୋଚୀନେ
ଫ୍ରାନ୍ସ ଜର୍ମାନୀରେ
ନାଜିବାଦ ବିରୁଦ୍ଧରେ ଟେକିଥିଲେ ଶାମ ଅସ୍ତ୍ର
ବୀରତ୍ୱର ସମ୍ମାନ ଓ ପଦକରେ ପୂରିଥିଲା ତାଙ୍କ ଛାତି

ଆଜି ସେ ଅତୀତ ଖାଲି
ସେ ଗୌରବ ଲୁପ୍ତ
ସେ ଉଜ୍ଜ୍ୱଳ ଆତ୍ମ-ତେଜ
ଶୀତଳ ପାଉଁଶ
କାହିଁ ପାକିସ୍ଥାନୀ ବୀର ଯୋଦ୍ଧା ଆଖି ଆଗେ ଆଗେ
ମହାନ୍ ନେତୃତ୍ୱ ସେହି ଭାରତୀୟ ସମରନେତାଙ୍କ
ଯେ ଚାଲିବେ ଆଗେ ଆଗେ ପଛେ ପଛେ ବାନ୍ଧିନେବେ ସେନା
ହସିବେ ମରଣ ମୁହଁ ଚୁମ୍ବି, ପଶିବେ ନିଆଁରେ, ମାରିବେ ଅରାତି,
ଅପଣା ହାତରେ

ଆପଣା ତୁଣ୍ଡରେ ନୁହେଁ
ନୁହେଁ ଇସ୍ତାହାରେ,
ନୁହେଁ ପଛେ ନିରାପଦେ ରହି
ପଛେଇ ପଛେଇ
ଥଙ୍ଗେଇ ଥଙ୍ଗେଇ
ବାଟ କାହିଁ ବାଟ କାହିଁ ଭଲ
ତୁଣ୍ଡେ ରଡ଼ି "ମାର ମାର ଆଗାଅ ଆଗାଅ"

ଆମେ କାଲ୍ ନବାଗତେ
ତୁମେ ଭାଇ ହୁଅ କମାଣ ମୁହଁକୁ ଧର ଓ ଚୋକଡ଼

ତୁନ୍ଦ କେତେବେଳେ ଘର୍ଦଶ୍ୱାସ, କେଉଁ ଅଳସ ମୁହୂର୍ତ୍ତେ
ଆଗ ପଛ ଭୁଲି
ମନେ ହେଉ ଅତୀତର କେଉଁ ରଣାଙ୍ଗନ ଛବି, ଦୂର ବେଳା ଭୂଇଁ,
କୋହ ଟେକ ସ୍ମୃତିଚକ୍ର
ପୁରୁଣା ବେଲୁଚ ବୀର କେଉଁ ଦୋସ୍ତ ମହମ୍ମଦ, ନାନା କ୍ଷତେ ବିଭୂଷିତ
ମନେ ମନେ ସଲାମ୍ କରେ ସେ କାଳର ତା' କ୍ୟାପ୍‌ଟେନ୍
ରଣ୍‌ଧୀର ସିଂକୁ
କି ବୀରତ୍ୱ ! କି ସାହସ ! କି ମହାନ୍ ଆତ୍ମତ୍ୟାଗ !
ଅଳ୍ପ ବୟସରେ କେଡ଼େ ସେ ପ୍ରବୁଦ୍ଧ ଯୋଦ୍ଧା !
କେଡ଼େ ବିଚକ୍ଷଣ ସମର କୌଶଳ ତାଙ୍କ
ଶତ୍ରୁ ବ୍ୟୂହ କରେ ଚୂନା ହସି ହସି ଅବଲୀଳାଭରେ
ଆଗେ ଆଗେ ଧାଇଁଯାଏ ଗୁଳିମାଡ଼ ବୋମାମାଡ଼ ଶଙ୍କୁଳିତ
ନିଆଁ ଧୂଆଁ ଭିତରକୁ ରାଇଫଲ୍ ଟେକ
ତାଙ୍କୁ ଦେଖି ପଛେ ପଛେ ଧାଏଁ ତା' କମ୍ପାନି
ଅଭିନବ ଉତ୍ସାହରେ ମାତି
ପଢ଼େ, ଯୁଦ୍ଧ ଜିଣି, ଶତ୍ରୁ କ୍ଷୟ କରି,
ହୋଇ କ୍ଷତେ ଲଲେଲାଲ୍ ସଜପୁଟା ପଞ୍ଚମୁଖୀ ଜବା

ତଥାପି ସେ କହେ କଥା ଅଛ ତୁମେ ସମସ୍ତେ ତ ଭଲ ?
ଖାଇଲଣି କିଛି ?
ସଜହୁଅ କାଲି ପୁଣି ଆହୁରି ସଂଗ୍ରାମ
ଆରାମ୍ ହାରାମ୍ ହାୟ
କରିଯିବା ଆପଣା କର୍ତ୍ତବ୍ୟ ଏ ପିଣ୍ଡରେ ଶେଷବିନ୍ଦୁ
ରକ୍ତଥିବାଯାକେ
ନିଜ ସମୀକ୍ଷକ ନିଜେ, ନଜାଣୁ ଜଗତ

କଏସେ ଗ୍ରବକ
ମିଠା ଆଖି ଭୂଲିଚଳ ଦୃଷ୍ଟି ସ୍ନିଗ୍ଧ ଓ ଶୀତଳ
ଗୁଲୁ ଗୁଲୁ ମୁହଁ ଗ୍ରବୁକ ଗ୍ରବ ବୟସ ପଚଶ
ଅଳ୍ପ ବଚନ, ଧୀର, ନାହିଁ କେବେ ନଶମୋଡ଼ା, ଗୁଣ୍ଡପୁଲ,
ଗବ ଆସ୍ଫାଳନ
ସେ ଚନୁରେ ଛପି ରହିଥିଲା,
ଅର୍ଜୁନ
କେଉଁ ପୁରାଣ ଯୁଗର,

କାହାନ୍ତି ସେ ସେନାପତି ଦଳ ଚାକ୍ ରଣଥାଟେ,
ଅଛନ୍ତି ସେପଟେ ସିନା ବହୁତ ବହୁତ
ଚନ୍ଦ୍ରାକୁଳ ଦୋସ୍ତ ମହମ୍ମଦ ଗ୍ରବେ
କଏ ଦେବ ସେ ପ୍ରେରଣା ସେ ଦ୍ୟୋତନା ନଜ ପ୍ରାଣ ତୁଚ୍ଛ କର
କଏ ସେ ବୁଝିବ ଏଠି ଗ୍ରରଭର ମୂଲ୍ୟ
ଯୋଦ୍ଧା ହୃଦ
ଜାଆଇବ ଆଦର୍ଶ ଦେଖାଇ !

୨୩

ଶିଥିଳ ଅବଶ ହୁଏ ଦୋସ୍ତ୍ ମହମ୍ମଦ ମୁଠା
ଫିକା ପଡ଼େ ମୁହଁ
ଆଖିରେ ଅନ୍ଧାର ଦେଖେ
ପଗ୍ଳରେ ନଜକୁ , କାହିଁକ ମୁଁ ଏଠି ଠିଆ ରାଇଫଲ୍ ହାତେ ?
କେଉଁ ମିଛ କ ଆଦର୍ଶ ଟେକ ମୁଁ ରଖୁଚ !
ଆଜ ଲୁଦ୍ଧେ ଏକଚ୍ଛତ୍ର ନାଜବାଦ ମୋ ଗୁଳର ଲକ୍ଷ
କାହିଁକ ଏ ଯୁଦ୍ଧ ମୋର ଭାରତ ସଙ୍ଗରେ
ଭବୁ ଭବୁ ସରେ ମୋ ଆୟୁଷ
ନଜକୁ ନପାରେ କର କେବେହେଲେ ବୋଧ
କଲ ପର କାମକରେଁ ପ୍ରେସିଡ଼େଣ୍ଟ ଆୟୁବ୍ ଡରରେ
ଯେତେ ଟେକେଁ ଉଠେନାହିଁ ତେଜ ଏଇ ଧମନୀରେ

ବର୍ଷ ବର୍ଷ ଧରି
ସତ କି ସେ କଥା ? ସତ କେବେ ?

କେବେ କଲା ସେ ଭାରତ କେଉଁ ଅନ୍ଦୋଳନ କେଉଁଣ ଅଶାନ୍ତ
କେଉଁଖିନ ?
ଦେଖିନାହିଁ କେବେ ।
ଇସ୍‌ଲାମ୍ ଧର୍ମ ? ପାଞ୍ଚକୋଟି, ଅଛନ୍ତି ମୁସ୍‌ଲିମ୍ ସେଠି
କେତେ ମସ୍‌ଜିଦ୍, କେତେ ପୀର୍ର ପୀଠ
କି ଆଦରେ ପାଳେ ସେହି ଦେଶ କି ସମ୍ମାନେ କି ସମ୍ଭ୍ରମେ
ଧର୍ମ ନିରପେକ୍ଷ ରାଷ୍ଟ୍ର, ଅଛି ପୂର୍ଣ୍ଣ ସ୍ୱାଧୀନତା ଭଜିବାକୁ ନିଜ ନିଜ
ଇଚ୍ଛାମତେ, ଖୋଦା କି ଦେବତା
ପାଳିବାକୁ ନିଜ ନିଜ ଚିତ୍ତ ବିଶ୍ୱାସରେ ନିଜ ଧର୍ମ ମତ ଓ ଶାସନ,
ନିଜ ପୂଜା ବିଧି
ପାତର ଅନ୍ତର ନାହିଁ ଟିକେ ହେଲେ ରାଷ୍ଟ୍ରଶାସନରେ ଧର୍ମ ଅନୁସାରେ,
ସ୍ୱୟଂ ଉପରାଷ୍ଟ୍ରପତି ଜାକିର୍ ହୁସେନ୍ ସାହେବ୍, ନୈଷ୍ଠିକ ମୁସ୍ଲିମ୍,
ଶିକ୍ଷାମନ୍ତ୍ରୀ ଜନାବ୍ ଏମ୍ ସି ଛାଗଲା, ଥିଲେ ବିହାର ଅଧିପ
ପଣ୍ଡିତ କବି ଶାସକ ମନ୍ତ୍ରୀ ଭାରତର, ହୁମାୟୁଁ କବୀର
କାଶ୍ମୀରର ମୁଖ୍ୟ, ସାଦିକ ସାହେବ୍
କେତେ କେତେ ଉଚ୍ଚତମ ରାଷ୍ଟ୍ରୀୟ ଦାୟିତ୍ୱେ
ପ୍ରଦେଶେ ପ୍ରଦେଶେ

ନାନା କ୍ଷେତ୍ରେ, ସଂଗ୍ରାମେ କି ଗ୍ରାମେ
ରହିଛନ୍ତି ଭାରତରେ ବରେଣ୍ୟ ମୁସ୍ଲିମ୍ ଭାଇ
ସବୁ ଭାରତୀୟ ସେଠି ସତେ ଯେସନେ ଏକା ବାପମା ପୁଅ
ସମ୍ପଦେ ବିପଦେ ଏକ, ନାହିଁ ଭେଦାଭେଦ
ତେଣୁ ତ ତାଙ୍କଠି ବଳ
କି ଅବସ୍ଥା କେବେ କଲା ସେ ଭାରତ ପାକିସ୍ଥାନର,
ସବୁ ତ ଦେଖିଲ କଥା ନୁହଁଇ ଆଜ୍‌ଗୁବ ।

## ୨୫

ଧରିନିଏ ସେ ଦେଲୁଚ ଷାର, ଦୋସ୍ତ ମହମ୍ମଦ, ଭାବେ—
କ'ଣ ତେବେ ଆମ ମତ୍‌ଲବ୍‌
ଆମ ଯୁଦ୍ଧ-ମୂଳ ଲକ୍ଷ୍ୟ ?
ନୁହେଁ ତା' ଅନ୍ୟାୟ ପ୍ରତିରୋଧ
ଧର୍ମ ଅବା ପୁଣ୍ୟର ପ୍ରତିଷ୍ଠା
ଅବଳା କ ଦୁର୍ବଳାର ରକ୍ଷା
ଅବା କ ଆଦର୍ଶ ଥାପିବାକୁ ନୂଆ ଯୁଗ
ଶାନ୍ତି ଓ ମୈତ୍ରୀର ।
ଧରଥାଏ ରାଇଫଲ୍‌ ଜଗିଥାଏ ଘାଟି
ଚମକେ ସେ ନିଜେ ଅଜାଣତେ ମନେ ମନେ
ଉଞ୍ଚାଏ ବନ୍ଧୁକ

ଭାବେ, ମୁଁ କ'ଣ ପାଗଳ ହେଲି ? କହିଦେଲି କାହା ଆଗେ
ମନ କଥା ଖୋଲି ?
ନାଃ, କେହିନାହିଁ ସେଠି
ଖାଲି ଗୁଡ଼େ ପାହାଡ଼ ଲହଡ଼,
ସାମ୍ନାରେ ଫମ୍ପା ଆକାଶ ଅଳ୍ପ ଛାଇ କୋଳା
ଉପତ୍ୟକା ଛାଟିଆରେ ସତେ ଅବା ଲୁହା ବାମ୍ଫ
ଦୂର ହିମ୍‌ବଳୟ ହିଶେ ଲୁହା ଦାଢ଼ ପରି

ଚାହିଁ ରହିଏ ଦୋସ୍ତ ମହମ୍ମଦ,
ଆକାଶ ହାଉଳ କରି ଲେଉଟି ଆସୁଛି ପାକିସ୍ଥାନୀ ଏଫ୍‌
ଏଇଟ୍‌ଟି ସିକ୍‌ସ
ଆମେରିକା ଗଢ଼ା ବୋମାରୁ ବିମାନ,
ପଛେ ପଛେ ଆହୁରି ପାଞ୍ଚଟା ।
କରିଥିବେ କାମ
ଜାଳିଥିବେ ଅବା ଭାରତର କେଉଁ ଗ୍ରାମ

ଭୁଲିଯାଏ ମୁହୂର୍ତ୍ତକ ଆଗ କଥା କେବେ ଦେଖା ଅଧାସ୍ୱପ୍ନ ପରି,
କ୍ଷୀଣ ହୋଇ ଶୁଭେ କି ନଶୁଭେ
ଆପଣା ହୃଦୟର ତଳେ ଛପିଲା ଭାଷାର ପ୍ରତିଧ୍ୱନି
ଓଠ କାମୁଡ଼ି ଅନାଏଁ ଚରଟି ଚରଟି
ମନେ ମନେ, ଗାଳିଦିଏ, ଆପଣାକୁ,

ଉଲ୍ଲୁ—
ବେକୁଫ୍—
କିଏ ତତେ କହିଥିଲା ମୁଣ୍ଡରେ ତୁ କିଛି ଭାବିବାକୁ ?
ଭଲ ମନ୍ଦ ଠିକ୍ ଭୁଲ୍ ଭାବି ହେଲେ ନ ଚଳିବ ଯୁଦ୍ଧ,
ସୈନିକର କାମ ନୁହେଁ ତା,
ଯଦିବା ଭାବିବୁ,
ବୁଝାଇବୁ ତୁ ନିଜକୁ ତୋ ପଟର ସବୁ କାମ ନ୍ୟାଯ୍ୟ, ସବୁ ଠିକ୍,
ଆରପଟେ ସବୁ ଦୋଷ ସବୁ ଭୁଲ,
ଆଖିବୁଜି ଗିଳୁଥିବୁ ଇସ୍ତାହାର, ବିନା ତର୍କେ ସତ ବୋଲି ମଣି,
ମତାଇବୁ ଆପଣାକୁ ଆପେ ଜାଣି ଜାଣି
ଯୁଦ୍ଧ ତୁ କରୁଚୁ ଧର୍ମ ସଂସ୍ଥାପନା ପାଇଁ,
ତୋ ଦେଶର ଇଜ୍ଜତ୍ ବିପନ୍ନ, ରକ୍ଷାକର୍ତ୍ତା ତୁହି
ଲୋଡ଼ା ନାହିଁ ଜାଣିବାକୁ କି ଯୁଦ୍ଧ ପ୍ୟେ, କିଏ କଲା, କି କାରଣେ

ତୁ ପରି
ତୁ ପରି ବନ୍ଧୁକର ପୁଞ୍ଜ ?

ତୋପ ଗୁଳି ରାଇଫଲ୍ ଛଡ଼ା, ହାଣ କାଟ ମାର ଧର ଜଳା ଭଙ୍ଗା ଛଡ଼ା
ଆଉ କ'ଣ ଅଛି ତୋର ସଂସାରେ ଜନମେ ?
ତୋ ପାଇଁ, ଯେତେବେଳେ ବୁହାଁ,
ସଂସାର ଏକ ତୋପ, କି ରାଇଫଲ୍,
ଲମ୍ବା, କଳା କଠିକଠି, ଜକଜକ, ସିଧା,
ତା' ମୁହଁରେ ନିଆଁ,
ତା' ଆଗରେ ଗୋଟାଏ—
ଟାର୍ଗେଟ୍, ଲକ୍ଷ୍ୟ

ଯେତେବେଳେ ଯେଉଁଟା, ଏପଟେ ସେପଟେ ଖାଲି ଟାର୍ଗେଟ୍
କ'ଣ ସେଠି ଅଛି, ଲୋଡ଼ା ନାହିଁ ମୋର ଜାଣିବାକୁ
ସେ ଜନ୍ଦା କି ମୂର୍ଦ୍ଧା, ମଣିଷ କି ଜନ୍ତୁ କି ପଥର
ଦୋସ୍ତ୍ ମହମ୍ମଦ୍ ଭୁ ଗୋଟାଏ ସଂଖ୍ୟା, ନାଁ ବି ନୋହଁ,
ମଣିଷ ବି ନୋହଁ,
ସେ ବି ଗୋଟାଏ ସଂଖ୍ୟା, ଟାର୍ଗେଟ୍, ଗୋଟାଏ ଗଲେ
ଆଉ ଗୋଟାଏ,
ଚଳାଉ ଭୁ ଗୁଳି, ଧାଉଁ ଏଣେତେଣେ
ନଜେ ଲୁପ୍ତ ହେବାଯାକେ,

ତା'ପରେ ଭୁ ନ ଥିବୁ,
ଫାଉ କଏ ତୋ ମଡ଼ ଉପରେ ଚଢ଼ି ଲଭ କି ଲୋକସାଣ୍
ତନ୍ଦ୍ରାକୁଳ ଦୋସ୍ତ ମହମ୍ମଦ୍ ସ୍ବଳେ ସଂତ ଅବା ଝୁଲୁଚ,
କ୍ଳାନ୍ତ ଲଗେ
ମନ ମାନେ ନାଇଁ,
ଲଗେ ସଚେବା ଛୁଇଁଚ ବଜୁଳି ତାର ଡି. ସି. କରେଣ୍ଟ୍,
ଯେତେ ଛଟପଟ୍ ହେଲେ ଗୁଡ଼ ହେଉନାହିଁ
ଦେହରୁ ଓ୍ବଟାରି ହୋଇଯାଉଅଛି ଶକ୍ତିବଳ ସାମରଥ ପ୍ରାଣ,
ସେକ ହେଉନାଇଁ,
ଗୌରବ ନାହିଁ, ଆଦର୍ଶ ନାହିଁ, ନ୍ୟାଯ୍ୟବଳ ନାହିଁ,
ଉଚିତ୍ ବୋଲି ଯୁକ୍ତି ନାହିଁ କିଛି,
ତଥାପି ସେ ଧରିଚ ବନ୍ଧୁକ
ଚୂପ୍ ଚୂପ୍ କହେ,
ଆଲ୍ଲାଃ !

## ୧୭

ଭାରତ ଉଚ୍ଛଳ ଉଠେ
ବାତ୍ୟାହତ ମହୋଦଧି ପରି
ଟେକ ଅସୁମାରି ଉର୍ମିମାଳ
ଶତ୍ରୁର ବର୍ବର ହୀନ ବେସରମ ଅତର୍କିତ ଆକ୍ରମଣ ବାଉ

କଟିବାକୁ ପ୍ରସ୍ତୁତ
ଭାଙ୍ଗିବାକୁ ବିଷଦାନ୍ତ ଛେଚିବାକୁ ମୁଣ୍ଡ ଆଉ ମେରୁଦାଣ୍ଡ ତା
ନିର୍ଲଜ୍ଜ ସଂଗ୍ରାମ ଅନ୍ତର
ଛାଡ଼ିବାକୁ ଗୋଟି ଗୋଟି କରି ତା ରକ୍ଷିତ ନାଗଫେଣି
ଅରମାରେ ପଶି

ଏସିଆର ଦୃଷ୍ଟିବାତ୍ୟା ଅନ୍ଧକାର ଭେଦି
ଜଳୁଛି ଏକଇ ଦୀପ ସେହି
ମୁକ୍ତିର,
ଦେଖାଇଲେ ଜଗତକୁ ଭାରତର ରାଷ୍ଟ୍ରପଥ ।

କି ଦର୍ପେ ଆସନ୍ତି ମାଡ଼ି
ଦନ ଦ' ପଦ୍ମରେ ଉଡ଼ାଏନ୍ତି ଦଳ ଦଳ
ପଶନ୍ତି କାଶ୍ମୀରେ
ଆପଣାକୁ କହି ମୁଜାହିଦ୍ ମୁକ୍ତି ସେନା
ପଡ଼ୋଶୀର ଆନ ସୀମାରେଖା ଡେଇଁ
ବୀରଭୂମି ସୁପବିତ୍ର ପଞ୍ଜାବ୍ ମାଟିରେ
ବଶିଷ୍ଠ, ବ୍ୟାସ, ପରାଶର, ମନୁ, ଯାଜ୍ଞବଳ୍କ ଜନ୍ମ ଯହିଁ ଆଦି ଋଷି
ମୁନିମସ୍ତ ଆର୍ଯ୍ୟଭୂମି
କବୀର, ନାନକ, ସନ୍ଥଗଣେ ବିଭୂଷିତ, ଜନ୍ମ ଯହିଁ ଗୁରୁ ଗୋବିନ୍ଦ ସିଂ

ବୀର ସିଂ ଶିଖ୍ ଜାତି ସ୍ରଷ୍ଟା, ଶିଖ୍ ଧର୍ମ ସ୍ଥାପୟିତା,
ଯହିଁ ସବୁ ବଡ଼ ସବୁ ପରାକ୍ରମୀ
ମଣିଷ କି ଦାଉଆନା ଗୋରୁ ଅବା ଡେଙ୍ଗା ଦେବଦାରୁ,
କି ଆସ୍ପର୍ଦ୍ଧା ! ପଶେ ଶତ୍ରୁ ରଣଜିତ୍ ସିଂ ଘରେ !

ପାଦେ ମାଡ଼େ ବୀରମାଟି ରାଜସ୍ଥାନ୍ ପୁଣ୍ୟ ବାପ୍ପାରାଓ ପୃଥ୍ୱୀରାଜ,
ମହାରଣା ପ୍ରତାପଙ୍କ ଧାମ,
ପଦ୍ମିନୀ-ପବିତ୍ର କ୍ଷେତ୍ର ସୂର୍ଯ୍ୟବଂଶୀ ଚନ୍ଦ୍ରବଂଶୀ ସୋଲଙ୍କି
ଚୌହାନ୍ ଆଦି ଯଶୋବନ୍ତ କ୍ଷତ୍ରିୟଙ୍କ ପୀଠସ୍ଥଳୀ

ସମୁଦ୍ରରେ ଲୁଚି ରହି
ଗୁଳମାରେ ବୀର ଗୁଜୁରାଟେ ଦ୍ୱାରକାପୁରକୁ ଭାଙ୍ଗିବାକୁ ଅବା
ଚକ୍ରଧାରୀ ଶ୍ରୀକୃଷ୍ଣଙ୍କ ନଡ
ଆସ୍ମୃଘ ଭକ୍ତରେ
ଅବା କରେ ତୋପରେ ସଲାମ୍, ମହାତ୍ମାଗାନ୍ଧୀଙ୍କୁ ।

୨୭

ଆକାଶ ଯୁଦ୍ଧରେ,
ହାରି ବାରମ୍ବାର,
ଛୁଡ଼ ଆଶା ବୋମାମାଡ଼ କରିବାକୁ ଭାରତର ରଣଘାଟି କଚ୍ଛ
ନଶା ବନ୍ତ ଚଳେ ତାଙ୍କି ମୁହଁ
ଶତ୍ରୁ ଉଡ଼େ ଆକାଶରେ ଅତି ସାବଧାନେ
ଅଜାଡ଼େ ତା ବୋମାବୋଝ କେବଳ ନଶ୍ଚନ୍ତ
ନଦେ ଶୋଇଥିବା
ପଲ୍ଲୀ ଅବା ସହରର ବସ୍ତିର ଉପରେ ବଜାର ଉପରେ ବାରମ୍ବାର,
ଅମ୍ବାଲା କ ଅମୃତସର, ଯୋଧପୁର ଜାମ୍‌ନଗର, ଜାମ୍ମୁ ଶ୍ରୀନଗର,
ଆଉ କେତେ
ଚଲମାର ପ୍ରାଣହେନ କ୍ଷୁ କରେ ଅନ୍ଧାରେ ଅନ୍ଧାରେ,

ଯେବେ ଖୋଲେ ଜହ୍ନ
ଶତ୍ରୁର ବିମାନ ତା ଟାର୍ଗେଟ୍ ସ୍ପଷ୍ଟ ଦେଖିପାରେ
କାହିଁ ମସ୍‌ଜିଦ୍
କାହିଁ ଶିଖ୍ ଗୁରୁଦ୍ୱାର
କାହିଁ ଏକ ପୁରାତନ ଗିର୍ଜାଘର ଦେଢ଼ଶ ବର୍ଷର
କାହିଁ ହସ୍‌ପାତାଳ ରୋଗୀଘର ଖଟେ ଖଟେ ଯହିଁ
ଶୋଇଛନ୍ତି ରୋଗୀମାନେ ଚିକିତ୍ସାର ଆରୋଗ୍ୟ ଆଶାରେ
କାହିଁ କେଉଁ ଜେଲଖାନାରେ କଇଦି ଅଛନ୍ତି, ତାଙ୍କୁ ବୋମା ମାରି
ମୁକ୍ତି ପଥ ନଦେବ ସେ
କଇଦି-ଆଜାମ୍ ଶିଷ୍ୟ ପାକିସ୍ଥାନ ବୋମାରୁ ବିମାନ, ଆଉ ଦେବ କିଏ
କାହିଁ କେଉଁ କୋଠାପରେ ଦିଶେ ରେଡ଼କ୍ରସ୍ ଚିହ୍ନ

ବାଟେ ଚାଲେ କେଉଁ ଆମ୍ବୁଲେନ୍ସ, ରୋଗୀ ବୁହେ,
କାହିଁ ପରସ୍କାର ଦେଖାଇଣ ପରିଚୟ ଚିହ୍ନ
ଅପେକ୍ଷା କରନ୍ତି
ୟୁ ଏନ୍ ଓ ଉଡ଼ାଜାହାଜ ଶାନ୍ତିକାମୀ ଜେନେରାଲ୍ ଇମୋଙ୍କ ବାହନ
କାହିଁ କେଉଁ ବୋର୍ଡିଂରେ
ଘୋଷୁଥାଏ ବନ୍ଧୁ କେଉଁ ସ୍କୁଲ ପିଲା, ପରୀକ୍ଷାର ପାଠ
ଶୋଇଥାନ୍ତି ସଙ୍ଗୀମାନେ ନିଶ୍ଚିନ୍ତ ନିଘୋଡ଼େ
କାହିଁ କେଉଁ ଗୋରୁଶାଳେ
ହମ୍ବାରଡ଼ି ଦିଏ ଗୋରୁ
ବଛୁ ପିଉଥାଏ ମା ଠାରୁ ଖୀର
ମା' ତାର ଚାଟୁଥାଏ ପିଠି

କାହିଁ କେଉଁ କୁଳଚାଳୀ ସହର ତଳରେ
ଲକ୍ଷ କରି ଛୁଡ଼େ ବୋମା ଏକ ଏକ ହଜାରେ ପାଉଣ୍ଡ୍
ଆଜି ନିଆଁ ଲଗା ନେପାମ୍ ବୋମା
ଦେଖାଏ ତା ପରାକାଷ୍ଠା
ମରନ୍ତି ବେ-ସାମରିକ କେତେ ଶହ ଶହ ।

ରହିଗଲା କେତେ ଜାଗା—
ଯାହା ନାଚ ସିନେମା ଥିଏଟର
ଫସକିଗଲା ଲକ୍ଷ
ରହିଗଲା ମାଛହାଟ ସବ୍‌ଜିମଣ୍ଡି ମଶାଣି ଓ ଗଙ୍ଗାଘାଟ
ଗାଧୁଆ-ପୋଖରୀ
ଫୁଟ୍‌ବଲ ପଡ଼ିଆ ଯେତେ ଆଜି ଯହିଁ ଖେଳନ୍ତି କବାଡ଼ି,
ଟିକିଟିକି ପିଲା
ଯେତେ ଇସ୍କୁଲ କଲେଜ ଡାକଘର ଅଫିସ ଦୋକାନ ଲାଇବ୍ରେରୀ
ଆଜି ହଲ କ୍ଷେତ ଚାଷୀ ଯହିଁ ହଳ ପେଲେ
ଆଜି କେତେ କେତେ ସ୍ଥାନ

ବେଲ ନାହିଁ ନାହିଁତ ମଜୁରୀ
ସେଗୁଡ଼ା ବନରେ ଶଏ ଘଞ୍ଚରେ ହଣ୍ଟନ୍
ବନବେଳେ ସେବର୍କୁ ଜେଣ୍ଟ୍ର ସେବର୍କୁ ଫୁଟ୍ ଗୁର୍ଗିବଏ
ଗୁରୁଚର ନ୍ୟାଣ୍ଟ୍

୨୮

ପକାଏ ଆବୁର ଶବ୍ଦ
ଲୁପ୍ତ ଶ୍ଳେଷ ବିମାନରୁ ଆକାଶ ଛତାରୁ
ଛଦ୍ମବେଶୀ ସୈନ୍ୟ କେତେ କେତେ ଗଡ଼ବଡ଼କାରୀ
ଅଣେ ବଣେ
ହାତେ ରାଇଫଲ୍ ଅବା ମେସିନ୍‌ଗନ୍
ମୁଣିରେ ବାରୁଦ ବୋମା ଡ଼ିନାମାଇଟ୍ ଫିଉଜ୍ ଓ ଯନ୍ତ୍ରପାତି
ଗୁର୍ଗିବେ ସେମାନେ ପୋଲ କାଟିବେ ବିଜୁଳି, ଓଲ୍ଟାଇବେ ରେଲ୍,
ପାଣିଭଣ୍ଡାରରେ ପୁଣି ପକାଇବେ ବିଷ
କରିବେ ସେ ନରହତ୍ୟା, ଭଙ୍ଗାରୁଜା କାମ, ଯେତେ ଗୋଳମାଳ,
ତାଙ୍କ ପକେଟରେ ଆଜ୍ଞାପତ୍ର ଏହି କଥା କହେ

ଏତେ କଥା,
କରିଥାନ୍ତେ କରିପାରିଥିଲେ, ପାଇଥାନ୍ତେ ଯବ ବାଗ,
ନ ମିଳିଲା ତାହା,
ଥୋକେ ଗଲେ ଗୁରକ୍ଷାପ୍ତ ପୁଲିସ୍ ଗୁଳିରେ, ଓହ୍ଲାଇ ଓହ୍ଲାଇ,
ଅବା ପଛେ
ପଡ଼ିଗଲେ ଥୋକେ ଅନ୍ଧସନ୍ଧି ଖୋଜି ବୁଲୁଥିବା
ପୁଲିସ୍ ଓ ଲୋକଙ୍କ ଘେରରେ,
ହେଲେ ବନ୍ଦୀ, ଜଗତ ଜାଣିଲା ସବୁ ଫନ୍ଦି, ଛବି ଓ ଡାଇରି ଛପା ହେଲା
ତାଙ୍କ ନାଁ ଜାରିହେଲା
ଗୁରୁଚର ଦେଶବାସୀ ଶୁଣିଲେ କା' ସ୍ୱୀକାରୋକ୍ତି ତା' ନିଜ
ସ୍ୱରେ ରେଡ଼ିଓରେ,
ଆଜି ଯେତେ ଯେତେ,

ଲୁଟିଲେ ଗହମ କ୍ଷେତେ ଅବା କେଉଁ ଗାଡ଼େ
ଭାରତର ବୀର ଗ୍ରାମବାସୀ, କାଶ୍ମୀରେ, ଜାମ୍ନୁରେ, ପଞ୍ଜାବେ,
ଦଳ ହୋଇ ଠେଙ୍ଗାଧରି ଧରି ବା କର୍ପାଣ୍
ଅବା ଗଇଁତି, ଶାବଳ, ଝୁସି
ବନ ଗାନ୍ତ ଖୋଜି ଖୋଜି ଧରିଲେ ତାହାଙ୍କୁ
କାଟିଲେ ଆପଣା ହାତେ ଆପେ ହୋଇଥିବା ବାଜ୍ରା କି
ଗହମ କି ଆଖୁ

ନ ପାରୁଣୁ ଶସ୍ୟ
ଗଲେ ଯାଜ ଯାଲକାର ଝାଳବୁହା ଆମଦାନିତକ
ନଥାଉ ବକଟେ ଧାନ ଲୁଟିବାକୁ ଛପିବାକୁ ଶତ୍ରୁ
ତେଣେ ପାକସ୍ଥାନ ହାଟେ,
ଆହା, ଗଲେ ଶତ ଶତ ପୁଅ ବାହୁଡ଼ି ନଇଲେ ।

୨୯

ଏ ଭାରତ
ହେଲା ପ୍ରଜ୍ୱଳିତ, କ୍ରୋଧେ,
କର୍ମି ଉଠେ କ୍ଷେତଖଳା କମାଇ ସହର,
ଶିର ଝୁଣି ଡାକେ ବୁଢ଼ା ଋଷୀ
"ନାହିଁ କରେ ଏ ଦେଶରେ ପିଲେ ? କାହିଁ ଗଲ ?
ଶତ୍ରୁ ପରି ପଶେ ଘରେ !"

ଛୁଟିଗଲା ସାଧାରଣ ଜନ—
ସୁପ୍ତି,
ଛୁଟିଲା ଅଳସ,
ଯୋଡ଼ିଗଲା ମୁହୂର୍ତ୍ତକେ ଯେତେଥିଲା ଫାଟ,
ଗଲା ଭାବୁକତା, ବସିବସି ବୁନ୍ଦିବା ଅନାଗତ ଭବିଷ୍ୟ ସ୍ୱପ୍ନକୁ
ଗାଇବାର ମନ୍ତ୍ର, ସିଞ୍ଚିବାର କରୁଣାର ବାରି,
କହିବାର ଶାନ୍ତ କଣ୍ଠେ—ବଦଳାଅ ଶତ୍ରୁର ହୃଦୟ ପୂତ ପ୍ରେମେ,

ସତ୍ୟ ଯେତେ ବାଜ ଆଉ ଛାଉ
ଭୁଣ୍ଡେ କେବେ ନ ଧର ମ' ପଦ
ନ ଜଗାଅ ବାଡ଼
କହୁଥାଅ ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ଯେତେ ଭାରତରେ ଥିଲେ ସନ୍ଥ, ଶାନ୍ତ ଆଉ ଅହିଂସା ପୂଜାରୀ,
ସ୍ତବ୍ଧ ହେଲେ, କାର୍ଟୁନ କରିଲା କଥା ପଥର ଉପରେ—
ନକଲିଲେ କେତେ, ଦେଖା ଆଉ ଗାଲ, ଶତ୍ରୁ ଆଗେ ।
ପାକିସ୍ଥାନ୍ ଜାଣି ତ ନଥିଲା—ତପସ୍ୱୀ ଭାରତ, ଶାନ୍ତିକାମୀ,
ସେ ଧରିବ ଅସ୍ତ୍ର !
ଜାଣି ନଥିଲା ସେ ମହାତ୍ମାଙ୍କ ଅହିଂସାର ଅର୍ଥ ନୁହେଁ,
ଭୀରୁତା ଓ ଦୁର୍ବଳତା ।

## ୩୦

ଏ ଅହିଂସା ସବଳର, ଦୁର୍ବଳର ନୁହେଁ,
କାପୁରୁଷପଣ ପାଇଁ ନାହିଁ ସ୍ଥାନ ଏ ଦେଶର କୌଣସି ଦର୍ଶନେ
କୌଣସି ଧର୍ମରେ,
ଆଗ ରାଷ୍ଟ୍ର ସ୍ୱାଧୀନତା ରକ୍ଷା, ପଛେ ଆଉ କିଛି, ଜୀବନ କି ମୃତ୍ୟୁ,
ଇହକାଳ ଅବା ପରକାଳ,
ମାନବିକ ଧର୍ମ ଏହି,
ଯୁଗେ ଯୁଗେ ଭାରତର, ପୁଣି ଜଗତର ।

ବିଶେଷ ଏ ଭାରତର ଧର୍ମ ଆଉ ଦର୍ଶନର ଶିକ୍ଷା,
ସହସ୍ରେ ଯୁଗର ସଞ୍ଚିତ ପରମ ନିଧି
ସେ ଶିଖାଏ, ଆଗ ତ ଶରୀର, ବ୍ୟକ୍ତି କି ରାଷ୍ଟ୍ରର, ପଛେ ସିନା
ଧର୍ମର ସାଧନ

ସେ କହେ,
ସବୁ ପୂର୍ଣ୍ଣତାରୁ ସ୍ପଷ୍ଟ, ସବୁ ନିଜେ ପୂର୍ଣ୍ଣ, ମଣିଷ ସାଧିବ

ଦେବାକୁ ପୁରୁଷୋତ୍ତମ
ସତ୍-ଚିତ୍-ଆନନ୍ଦରୂପ
ନହେବ ତା ଭୂଗଣ ଆଜ କ୍ଲୀବ, ଦେହ ଧରି ଜୀବନକୁ କଲେ
ପ୍ରତ୍ୟାଖ୍ୟାନ
କେବେହେଲେ ନ ହେବ ତା' ଉପ୍ତେ
ପରକୁ ଦାନ୍ତ ନକୁଟି
ମାତୃରକ୍ଷା ପାଇଁ, ନ'ମଣେ ସେ ବଡ଼ ଯେତେ କ୍ଷୟକ୍ଷତି
ଯେତେ ଯଜ୍ଞେ ଆତ୍ମବଳି ଦାନ,

ଏ ଜୀବନ ଗଲେ ଯାଉ ପିନା
ମହାତଳେ ରହୁ କଥା ନହତପଣର,
ତା ବସ୍ତୁରେ,
ଆତ୍ମାର ବିନାଶ ନାହିଁ ।

ଏ ଦେଶର ଶାସ୍ତ୍ର ଗନ୍ଥାଦରେ
ଅଛୁ ନାନା ପୋତ
ତରିବାକୁ ମୃତ୍ୟୁ ବିଭୀଷିକା ଧ୍ୱଂସ ପ୍ରଳୟର
ଦୁସ୍ତର ବାରିଧି
ଅଟଳ ଅକ୍ଷୟ ଆଜ ଜର୍ଉଷ୍ମ ତତ୍ତ୍ୱାସେ
ଆସୁ ଯେତେ ମୃଣ୍ଡଧ୍ୱବ ଝଡ
ତେଣୁ ତ ଭାରତବର୍ଷ ରହିଛି ତଥାପି କେଉଁ
ନାଁ ଜଣାନାହିଁ ଯୁଗୁଁ
ଆସୁର, ଦ୍ରାବିଡ଼, ବେଦୋପନିଷଦ କାଳୁଁ କେଉଁ କାଳୁଁ
ରହିଛି ସଭ୍ୟତା
ଗଲେ କେତେ ଆସିଲେ ବା ନୂଆ
କିଏ ସେ ଚିହ୍ନିରେ
ସମନ୍ୱୟ ହେଲେ ସବେ ଏକ ପିଣ୍ଡେ ଏ ଦେଶ ଭୂଇଁରେ,
ନୁହେଁ ଏ ଦେଶ ବିଶ୍ବର ଏକଦେଶୀ କ୍ଷୀଣଦୃଷ୍ଟି
କ ଏକଆଖିଆ

## ୩୧

ଏ ଭାରତ ସାଧାରଣତନ୍ତ୍ର ଲୋକପ୍ରତିନିଧି ସଭା
କରିଲା ନିଷ୍ପତ୍ତି ଏକ ସ୍ୱରେ
ଦେବ ସେ ଜବାବ୍ ବନ୍ଧୁକୀ ଶତ୍ରୁକୁ, ବନ୍ଧୁକ ଭାଷାରେ,
ଘଉଡ଼ିବ ଦେଶରୁ ଶତ୍ରୁ, ପାଦା ଲାଗୁ
ସେହି ଘୋର ଧୀର ଶାନ୍ତ ଗମ୍ଭୀର ନିଷ୍ପତ୍ତି, ମର୍ଯ୍ୟାଦା ମଣ୍ଡିତ
ଶୁଣାଇଲେ ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀ,
ପଡ଼ିଲା ଚହଳ ଦେଶେ, ଚମକିଲା ଧରା,
ଖେଳିଲା ବିଜୁଳି
ଛୁଟିଲେ ବୀର ଜଓ୍ୱାନ୍ ଭାରତୀୟ ସେନାଥାଟ
ଭାରତମାତାର ବଳୀୟାର ପୁଏ,
ଶୁଭେ ପ୍ରତିଧ୍ୱନି —"ଜୟ ଜଓ୍ୱାନ୍! ଭାରତମାତା କୀ ଜୟ !"

## ୩୨

ଅନୈକ୍ୟେ ଏକତା
କ୍ୱଚିତ୍ ଦିଶେ ଏ ଜଗତେ ଭାରତେ ଯେପରି ।

ସତେ ଯେହ୍ନେ ଏକଇ ଦେବତା, ବହୁରୂପେ ପ୍ରତିଷ୍ଠିତ ନାନା ପୀଠେ,
ଏକ ଆତ୍ମା, ନାନା ଦେହ ଧରି ପ୍ରତିଭାତ
ଏକ ଉପାଦାନ ଥାଇ ଏକ ଜଳ, ଅଛୁ ନାନା ଘଟେ
ସେହିପରି ଏ ଭାରତବାସୀ
ନାନା ଧର୍ମ, ନାନା ଭାଷା, ନାନା ଜାତି, ନାନା ଶ୍ରେଣୀ,
ନାନାବିଧ ଆଗ୍ଭର, ତଥାପି ତ ଏକ
ବିଦେଶୀ ନ ଜାଣେ ତାର ତତ୍ତ୍ୱ,
ଭାବେ ତ କମିଆଁ ।

ନୃତତ୍ତ୍ୱ ପଣ୍ଡିତ ଧନ୍ଦ ହୁଏ
କେବେ ଯଦି ଦେଖେ କେରଳୀ ଚେହେରା କାଶ୍ମୀର ବ୍ରାହ୍ମଣ ପରି
କେବେ ଦେଖେ ଝବଡ଼ ବନାମ୍ନ ଝୋଳେ କନ୍ଧଘରେ
କଆଫୁଲ ପରି ଗୋରା ଫର୍ଶ ଦେହ ବୃଷ ସ୍କନ୍ଧ ଠିଆ ନାକ
ନାଲି ମୁଣ୍ଡବାଳ,
ପଚ୍ଚରଇ ଯଦି କାହା ବଂଶାବଳୀ ଦକ୍ଷିଣ ଆନ୍ଧ୍ରରେ

କଏ କହେ—"ଆଜ ମୋ ତେଲୁଗୁ ମାତୃଭାଷା, ଇଣ୍ଟିପେରୁ
ଅର୍ଥାତ୍ ଆଦ୍ୟଗ୍ରାମ ନାମ ଅନ୍ଧାରୁଆ, ସଂକ୍ଷେପରେ 'ଏ'
କିନ୍ତୁ ଆମେ ପଟ୍ଟନାଇକୁଲୁ
ଓଡ଼ିଶାରୁ ଉଠି ଆସିଥିଲୁଁ ସେ କେତେ ପୁରୁଷ ତଳେ, ମନେ ନାହିଁ
ତେଣୁ ଓଡ଼ିଆ ଭୁଲିଚୁଁ,
ଶୁଣିଛୁ ପୂର୍ବରେ କେବେ, ପଞ୍ଜାବର ଉତ୍ତର ସୀମାନ୍ତେ
ଥିଲା ଆମ ଗାଁ
ଶକ୍ ସଙ୍ଗେ ଲଢ଼ିଥିଲେ ମୋ ପୂର୍ବପୁରୁଷ
ଗ୍ରାମେ ଅଢ଼େଇଟି ଘର ବଞ୍ଚିଥିବାଯାକେ
ତେଣୁ ସେ ଖ୍ୟାତ ହେଲେ ଅଢ଼େଇ ଘରିଆ ବୋଲି
ସେ ବଂଶରୁ କେହି ଏକ ପରିବାର ଆସିଥିଲେ ପୁରୀ ତୀର୍ଥକରି
ନ ଫେରିଲେ ଆଉ,
ମୂଳ ପିଢ଼େ ଚନ୍ଦ୍ର କପୁର୍ ଓ ଖାଣ୍ଡା, ଭାଷା ଗୁରୁମୁଖୀ,
ବୈବାହିକ ବର୍ଦ୍ଧମାନ ଗଡ଼ ମହତାବ, କହନ୍ତି ବଙ୍ଗଳା ।"

ପୂର୍ବପ୍ରାନ୍ତ ଓଡ଼ିଶାରେ, ଓଡ଼ିଶୀ ବ୍ରାହ୍ମଣ କହେ
ଶୁଣିଚି ଅତୀତେ, କାନ୍ୟକୁବ୍ଜ ଦେଶୁଁ ଆସିଥିଲେ,
ପଣଅଜା ମୋର
ଆଣିଥିଲେ ଉତ୍କଳର ରଜା,
ବସାଇଥିଲେ ଶାସନ,

ଗଡଜାତ ରାଜା କହେ, ମୁହିଁ ରାଜସ୍ଥାନୀ, ରାଜପୁତ,
ଆଜ ସିନା ବୁଝେ ନାଇଁ ହିନ୍ଦୀ,

ବଙ୍ଗଭାଷୀ ଭଟ୍ଟାଚାର୍ଯ୍ୟ କହେ, ମୁଁ ଜାଣ କାଶ୍ୟପ,
ନ ଜାଣଇ କେତେ ବର୍ଷ ତଳେ, ଆସିଥିଲୁଁ କାଶ୍ମୀରରୁ ।
ସିକମ୍‌ରେ ବସେ କେଉଁ ଶ୍ରେଷ୍ଠ
ମିଳେ ଗୁଜୁରାଟେ, ସେ କେଉଁ ସାତବାହନ, ଜାଣେ ନା ତେଲୁଗୁ ।

ନୃତତ୍ତ୍ୱବିତ୍ ଗୋଳମାଳେ ପଡ଼େ ବାରମ୍ବାର,
ଚିକିଣି ଯେତେ କଲେ ଶ୍ରେଣୀ
ଏରିଏନ୍ ଡ୍ରାଭିଡିଏନ୍ ମଙ୍ଗୋଲିଏନ
ଅବା ଏରିଓ-ଡ୍ରାଭିଡ଼ୋ-ମଙ୍ଗୋ-ପ୍ରୋଟୋ ଅଷ୍ଟ୍ରାଲଏଡ୍
କେଫାଲିକ୍-ଇଣ୍ଡେକ୍ସ ଆଉ ନାକ ଆଖି ଚମ ମୁଣ୍ଡବାଳ
ଅନୁସାରେ ଶୁଦ୍ଧ ଶ୍ରେଣୀଭାଗ

ହୁଏ ନାଇଁ କଚ୍ଛୁ ତସ୍ଥ
ସବୁ ମିଶାଗୋଳା
ଆଜ ବୁଝେଁ ବହୁ କାଳୁଁ, ଯାଦବ ଶ୍ରୀକୃଷ୍ଣ, କେଉଁ 'ରେସ୍' ତାଙ୍କ ?
ବଳୀ କ ରାବଣ, ଆର୍ଯ୍ୟ କ ଅନାର୍ଯ୍ୟ ? ଦେବ କ ଅସୁର ?
ଉତ୍ତର କ ଦକ୍ଷିଣର ?

୩୩

ଧର୍ମେ ପୁଣି, ମିଶାଗୋଳା କେତେ ମତେ !
ହିନ୍ଦୁର ବଡ଼ଠାକୁର,
ପୁରୀ ଜଗନ୍ନାଥେ, କେବେ ଥିଲେ ଆଦିବାସୀ ଶବର ଦେବତା,
"ଜନାଂଗ୍ଲେ"
କେବେ ଖାଲି ଦାରୁବ୍ରହ୍ମ, ବେଦ ଯୁଗେ,
କେବେ ଜୈନ, କେବେ ବଉଦ ମୁରତ, ଆଦିବୁଦ୍ଧ ବଜ୍ରଧର,
ବୁଦ୍ଧଙ୍କ ଦେବ ଶରୀର ଅଂଶ ପୁଣି, ଥିଲା ତହିଁ

ହିନ୍ଦୁ ପୂଜେ ଜଗତର ନାଥ ବୋଲି
ସବୁ ଚିନ୍ତା ସବୁ ଧ୍ୟାନ ତହିଁ ସମାହିତ,
ମାନବଙ୍କ ସଭ୍ୟତା ଓ ଆଦର୍ଶର ପ୍ରତୀକ ସେ, ନାହିଁ ଭେଦାଭେଦ,
ଜାତିବର୍ଣ୍ଣ ।

ସେହି ଜଗନ୍ନାଥ ପୁଣ୍ୟ ପୀଠେ ପ୍ରତିଷ୍ଠିତ
ସତ୍ୟନାରାୟଣ ମୂର୍ତ୍ତି,
ସତ୍ୟପୀର୍ ସିଏ, ଯେଣନ୍ତି ଶିରଣି ।

ପାଞ୍ଚଶହ ବର୍ଷ ଗଲା ସ୍ଥଳ,
ଦେଖିବନୁଁ ପ୍ରଭୁ ସତ୍ୟ-ପୀର, ମୁସ୍ଲିମ୍ ଓ ହିନ୍ଦୁର ଦେବତା,
ସୃଷ୍ଟି ହେଲା ପାଲା

ଉତ୍କଳରେ, ଖୋର୍ଦ୍ଧାର ମାଣିକ୍ୟଗଡ଼େ,
ଠାକୁରାଣୀ ମାଣିକ୍ ଭୂୟାଁଣୀ
କେଉଁ ହଜାର ଅତୀତେ, ଯେବେ ତେଣେ ଥିଲେ ଭୂୟାଁ ଜାତି,
ଆଦିବାସୀ

ଥାପିଲେ ଦେବତା
"ପାବ୍‌ଡ଼-ଭୂୟାଁ" ପଲ୍ଲୀ ପାହାଡ଼ରେ
ବଣାଞ୍ଚ ପ୍ରାନ୍ତରେ, ଅଦ୍ୟାନ୍ତ ଯେପରି
ଠାକୁରାଣୀ ଦେବୀ "କନ୍ତକୁଆଁସୀ"

ପଛେ ଭୂୟାଁ ଗଲେ—
ହିନ୍ଦୁ କଲା ଗଡ଼, ସେ ହୋଇଲେ ଦେବୀ, ଦୁର୍ଗା ।
ଆସିଲେ ମୁସ୍ଲିମ୍, ବସ୍ତି କଲେ, ମାନ୍ୟକଲେ ଗଡ଼ ଦେବତାଙ୍କୁ
ଏବେ ଯେବେ ଆସଇ ଦଶହରା, ନବରାତ୍ରପୂଜା
ମୁସ୍ଲିମ୍ ଦଳବେହେରା ବସେ କୁଶବଟୁ ପିନ୍ଧି, ବ୍ରାହ୍ମଣ ସଂଗତେ
ବେଦୀମଣ୍ଡପରେ

କରଇ ସଂକଳ୍ପ
ମହା ପଟୁଆରେ ସ୍କନ୍ଧେ ଚଳନ୍ତି ପ୍ରତିମା ଘୁମୁଡ଼ିଆ ତଳେ
ହିନ୍ଦୁ ମୁସ୍ଲିମ୍ ଘର ଆଗେ, ଭୋଗ ନେନେ,
ଓଡ଼ିଶାରେ ନାନା ଗ୍ରାମେ
ମୁସ୍ଲିମ୍ ପାଳେ ଲକ୍ଷ୍ମୀଓଷା ମାଣବସା ଗୁରୁବାର
ମସ୍ଜିଦ୍ ଓ ମନ୍ଦିର
ଠିଆହୋଇଥାନ୍ତି ଦାଣ୍ଡ ଏପଟ ସେପଟ
ଭାରତୀୟ ଚିରନ୍ତନ ମାନବିକ ସମନ୍ୱୟ ବାନା ଜଗି ଜଗୁଆଳ
ପରି ଝଡ଼େଁ,
'ହାମ୍ କଦାର୍'ର ଇଜ୍ଜତ୍ ପାଇଁ, ଦୁର୍ଗା ପଟୁଆରେ
ପିଟାପିଟି ହୋଇଯାନ୍ତି ଦ' ସାହିର ଦୁଇଦଳ ମୁସ୍ଲିମ୍,
ତାଜିଆରେ ଯୁଦ୍ଧହୁଏ ଦ' ସାହି ହିନ୍ଦୁଙ୍କ,
ସ୍ଥାନୀୟ ଇଜ୍ଜତ୍ ପାଇଁ,
ସେ କଜିଆ ନୁହେଁ ଧର୍ମଗତ, ଅବା ଜାତିଗତ !

ଗ୍ରାମେ ଗ୍ରାମେ ସୂର୍ଯ୍ୟବନ୍ଧୁ ଅସୁମାରି ହିନ୍ଦୁ ଓ ମୁସ୍ଲିମ୍,
ବାହା ନିମନ୍ତ୍ରେ ଖାଆନ୍ତି ଏକାଠି,
ଗୁଆପଡ଼େ, ଭରଥୋଇ ସ୍କନ୍ଧେ
ମୁସ୍ଲିମ୍ ଧରମ ମାଆ,
କରେ ତା ହିନ୍ଦୁ ଝିଅକୁ କନିଆଁ ଡାକରା, ବିଭାବେଳେ
ସାହିର ମୁସ୍ଲିମ୍ ନାରୀ ମାଆ କ ଖୁଡ଼େଇ ପିଇସୀ ମାଉସୀ ଯେତେ
ଖୁଆଇ ମିଷ୍ଟାନ୍ନ, ପିନ୍ଧାଇ ଝିଅକୁ ଶାଢ଼ୀ ଅଳଙ୍କାର
ବେଢ଼ି ବସି ବାହୁନନ୍ତି—
"ଶଶୁରାଲ୍ ଯିବ ମେରି ବେଟୀରେ"

୩୪

ଇଂରେଜ ଆସିବା ଆଗେ ଭାରତକୁ
କରିବା ଆଗରୁ ଜାରି "ଡ଼ିଭାଇଡ଼୍ ଏଣ୍ଡ୍ ରୁଲ୍"

ଟିହାଇବା ମତାଇବା ଆଗରୁ ସେ ହିଂସ୍ର ଆଉ ଚମିସ୍ର ଅଜ୍ଞାତ ଛଳେ -
ଗୋଟାଏ ପ୍ରାନ୍ତର ଲୋକରଙ୍କୁ
ଆଉ ଏକ ପ୍ରାନ୍ତ, ଲୋକର ବିରୁଦ୍ଧେ
ଚେଜବା ଆଗରୁ ଈର୍ଷା ଅତ ଚତୁରରେ ଜଣକୁ ମୁଣ୍ଡାଇ ଆଉ
ଜଣକୁ କଲୁଡ଼

ବାଗ ଦେଖି ପାଗ ଦେଖି କୂଟ ବଦଳାଇ
ପ୍ରଶଂସି ଜଣକୁ ନିନ୍ଦ ଅପରକୁ
ଉପୁଜାଇ ଦାନାପାଣି କଳି
ଭାଷାର ବିଭେଦ ଚେଜ
କେବେ ଦେଖା ନଥିଲା ଏ ଭାରତର କେଉଁ ପ୍ରାନ୍ତେ କେବଣ ଭାଷାରେ
କିଏ କେଉଁ ଭାଷା କହେ ସେଥିପାଇଁ ଅନ୍ୟ ଭାଷାଭାଷୀ ଲୋକପ୍ରତି
ଆସ୍ଫାଳନ, ତାଚ୍ଛଲ୍ୟ, ଆକ୍ରୋଶ,

ନଥିଲା କାହାର ସ୍ୱପ୍ନେ କୌଣସି କୌଶଳେ ବଡ଼ାଇବାକୁ ଆପଣା
ଭାଷା କୁହା ମଣିଷଙ୍କ ମେଣ୍ଟ ଆଉ ବଳ,
ମାତ ମହତ ବଦଳେ ଭାଷା ସେନ ଗର୍ବ କରିବାର
ଜଣା ତ ନଥିଲା କେବେ ଭାରତୀୟ ଘରେ, ସମାଜରେ ଅବା
ସାହିତ୍ୟରେ,
କେତେଥିଲା ପୁରାଣ କି କାବ୍ୟ, ଲୋକଗୀତ, କିମ୍ବଦନ୍ତୀ,
ଅସଂଖ୍ୟ ବଂଶର ଶୌର୍ଯ୍ୟ ଅଉ ଯଶର କାହାଣୀ,
କେଉଁ ରାଜ-ବଂଶ ରାଜୁତିକାଳରେ,
କାହା ସଙ୍ଗେ ହୋଇଥିଲା ଯୁଦ୍ଧ କି ବନ୍ଧୁତା,
ସେହି ରାଜ୍ୟବାସୀ, ଭୁଞ୍ଜୁଥିଲେ କି କି ସୁଖ ଅବା ଦୁଃଖ
କି କି କାର୍ତ୍ତି ଗଢ଼ା ହୋଇଥିଲା, ଦେଉଳ, ପୋଖରୀ, ବନ୍ଧ,

ମାତ କଣ ? ଆଦର୍ଶ କଣ ? ଭଲ ମନ୍ଦ ଦୋଷଗୁଣ କଣ ?
ସେହି ପୁ ରୁଣା କାହାଣୀ,
ହୋଇଥିଲା ଭାରତର କୋଠଧନ, ଖାଲି ଜଣଙ୍କର ନୁହେଁ

ସେ କ'ଣ ବେଦୋପନିଷଦ କଥା ? ଅବା ଚଣ୍ଡୀ ?
ସେ କ'ଣ ରାମାୟଣ ? ମହାଭାରତ କି ସେ ?
କି ଅବା ସେ ଭାଗବତ ହରିବଂଶ ଅଷ୍ଟାଦଶ ପୁରାଣର କେଉଁ କଥା ?

ସେ କ'ଣ ଜୈନ ତୀର୍ଥଙ୍କରଙ୍କର ଇତିହାସ ?
ଅଥବା ସେ ବୌଦ୍ଧ ତ୍ରିପିଟକ ଅବା ଜାତକ ସମ୍ଭାର ?
ଅବା ବଜ୍ରଯାନୀ ଚୌରାଅଶୀ ସିଦ୍ଧକଥା ?
ସେ କ'ଣ ପଞ୍ଚତନ୍ତ୍ର, ହେଉପଦେଶ ହିତ-ଉପଦେଶ
ଅଥବା ସେ କଥା-ସରିତ୍-ସାଗର ?
ଅବା ସେ ସଂସ୍କୃତ କାବ୍ୟ କି ନାଟକ ? କାଳିଦାସ ଜୟଦେବ
ଭବଭୂତି କୃତି ?
ସେ କ'ଣ ଭାରତର କେଉଁ ତୀର୍ଥ କି ଧାମର କ୍ଷେତ୍ରର ମାହାତ୍ମ୍ୟ କଥା ?
ସେ କ'ଣ କେଉଁ, ମୁନି ଋଷି ସିଦ୍ଧ ସନ୍ଥ କଥା ?
ଅବା ବିକ୍ରମାଦିତ୍ୟ ଓ ବେତାଳ କାହାଣୀ ?

ସେ କ'ଣ କେଉଁ
ତମସା ବର୍ତ୍ତ୍ୟ ଯୁଗ ଅନ୍ଧକାରେ
ଧର୍ମପନ୍ଥା ପ୍ରବର୍ତ୍ତକ ସନ୍ଥଙ୍କ ଚରିତ,
ଭଗବାନ ବୁଦ୍ଧ, ଶଙ୍କର, ରାମାନୁଜ, କବୀର, ନାନକ, ଚୈତନ୍ୟ
ରାମଦାସ, ତୁକାରାମ୍, ବୋପଦେବ, ବାମଦେବ,
ତିରୁଓ୍ୱଲ୍ଲୁଆର୍, ମୀରବାଈ, ବିଦ୍ୟାପତି, ସୁରଦାସ, ଜଗନ୍ନାଥ ଦାସ,
ଶଙ୍କର ଦେଓ, ମଧ୍ୱମ ଗୋସାଇଁ ?

ସେମାନେ ସମସ୍ତେ,
ଆହୁରି ଅନେକେ, ଯେଉଁମାନେ ଜାଳିଗଲେ ଦୀପ
ଇଂରେଜ ଅମଳ ନ ହେଉଣୁ,
ଭାରତର ଅନ୍ଧ ସନ୍ଧ ଅଣେ ବଣେ କଣେ
ଯେ ତାଙ୍କ ନାଁ ଜାଣେ, ଜାଣେ ତାଙ୍କ କୀର୍ତ୍ତି
ସେ ତ ଜାଣେ ସେ ତା'ର ନିଜର,
ପୁଣ୍ୟଶ୍ଳୋକ କ୍ଷେମଙ୍କର ଗୁରୁ ଉପଦେଷ୍ଟା ।

କେହି କେବେ ଭାବନାହିଁ
କି ଭାଷା ତାଙ୍କର ଥିଲା
କ'ଣ ତାଙ୍କ ସ୍ଥାନୀୟତା ବିଶିଷ୍ଟ ସ୍ୱରୂପ
କ'ଣ ସେ ଖାଉଥିଲେ ଭାତ ଅବା ରୁଟି ।

୩୪

ଚତୁର ଇଂରେଜ୍,
ପରଦେଶେ ସାମ୍ରାଜ୍ୟ ଓ ବଣିଜ ବିସ୍ତାର କାର୍ଯ୍ୟେ
ଯେ ଥିଲେ ଅଗ୍ରଣୀ
ରୋମକ ବାସ୍ତ୍ରର ମନ୍ତ୍ର ଆଣ୍ଟେ ଥିଲେ ଧରି
"ଡିଭିଡେ ଏଟ୍ ଇମ୍ପେରା"
"ବିଭେଦ ଲଗାଇ ଦେଇ
ଖଣ୍ଡ ଖଣ୍ଡ କଲେ ଯାଇ ତାହାପରେ
କର ତୁ ଶାସନ"

ତୀକ୍ଷ୍ଣ-ଦୃଷ୍ଟି ବଳେ ସେ ଦେଖିଲା
ଭାରତରେ ନାନା ଭାଷା, ବର୍ଣ୍ଣ, ଜାତି, ଧର୍ମ,
ସବୁ ଖାଲି ବାହାରର ଭେକ, ଚର୍ମ ମଧ୍ୟ ନୁହେଁ,
ଭିତରେ ଭିତରେ—
ଏକ ଅବିଚ୍ଛେଦ୍ୟ ଆତ୍ମିକ ଏକତା
ବିସ୍ମିତ ଇଂରେଜ ଦେଖେ
କାହିଁ କେଉଁ ଅନ୍ତରାଳେ ପଲ୍ଲୀ କୋଳେ
ନାରିକେଳ ମାଳତଳେ କେରଳରେ
କୌପୀନ ପିନ୍ଧା କୃଷକ ଯେ ନଜାଣେ ନିଜ ଗ୍ରାମ ସୀମା ଟପି ଅଛି
କେଉଁ ଗ୍ରାମ
ନ ଚଢ଼ିଛି ଗାଡ଼ି ନ ଦେଖିଛି କେବେ ଯେ ସହର
ସ୍ନାନସାରି ଗ୍ରାମ ପୋଖରୀରେ ଧରି ଅଞ୍ଜୁଳିରେ ମୁଠେ ଜଳ

କହେ ଆସ ପଣ ଏଥି ହେ ଭାରତଯାକ ତୀର୍ଥ ସଲିଳ
ଏହି ମୋର ଜଳ ଅଞ୍ଜଳିରେ
ଯେମନ ହେ ପୂର୍ବପୁରୁଷେ ଏହି ଜଳ
ନଦୀ ନାମେ ଧରି ଡାକେ ସଂସ୍କୃତ ବଚନେ
"ଗଙ୍ଗେ ଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ
ନର୍ମଦେ ସିନ୍ଧୁ କାବେରୀ ଜଳେଽସ୍ମିନ୍ ସନ୍ନିଧିଂ କୁରୁ"
କି ଆଶ୍ଚର୍ଯ୍ୟ ! ଗାଏ ଅବା ଭାରତର ମାନଚିତ୍ର, ସମଗ୍ର ଦେଶକୁ
ଦେଖିଲି ପରିଏ
ଜଣକର ଗ୍ରାମବୃଦ୍ଧା ଯା ଆଧାର ଚନ୍ଦ୍ରକ ମୂର୍ତ୍ତିଏ

ଆହୁରି ଆଶ୍ଚର୍ଯ୍ୟ ହୁଏ, ସେ ଇଂରେଜ୍—ବିଦେଶ ଆଗତ
ଦେଖେ ଯେବେ ସେହି ବୃଦ୍ଧା
ସ୍ନାନ ସାରି ଜପେ
ଭାରତର ଅଖଣ୍ଡତା ଏକତା ସ୍ମାରକ ନାନା ସ୍ଥାନ ନାମ
ଗଦ୍‌ଗଦ ଭକ୍ତିଭରେ
ହିମାଦ୍ରି ଶିଖରୁ ସେତୁବନ୍ଧଯାଏ ସବୁ ସ୍ଥାନ ମାଟି ପାଣି
ତା ପାଇଁ ପବିତ୍ର ପୂଜ୍ୟ
ବିଶାଳ ଭାରତ ଗୋଟାକ ତା ଫାଦର୍‌ଲ୍ୟାଣ୍ଡ୍ ମଦର୍‌ଲ୍ୟାଣ୍ଡ୍ ଅବା
ସବୁ ତାର ଦେଶ, ନୁହେଁ ଖାଲି ଏହି ଛୋଟ ଗାଁ
ସବୁ ତାର ପିତୃକୁଳ ମାତୃକୁଳ ଭାଷାନୁହେଁ ଖାଲି ମାଲୟାଲମ୍
ସମସ୍ତେ ତା ଜାତି ଭାଇ ରକ୍ତ ଭାଇ ଦେଶ ଭାଇ ଅବା
ପଞ୍ଜାବୁଁ ଆସାମ ଯାକେ
ହିମାଚଳ ଦେଶୁଁ
କନ୍ୟାକୁମାରୀ ପର୍ଯ୍ୟନ୍ତ
ସବୁଠିଁ ଠାକୁର ତା'ର ସବୁଠାରେ ତାହା ପାଇଁ ତୀର୍ଥ
ଦରିଦ୍ର ନିଃସ୍ୱ କୌପୀନଧାରୀଠି
ଏକସୂତ୍ରୀ ଦେଶ-ଚେତନାର, ସ୍ୱଦେଶପ୍ରୀତିର,
ଏ କି ବ୍ୟାପକତା ଗଭୀରତା
ଦେଖାନାହିଁ ଯାହା କେବେ ଅନ୍ୟତ୍ର କୁତ୍ରାପି !

କେରଳର ସେ କୃଷକ
ମନ୍ତ୍ର ପଢ଼େ,
ସୂର୍ଯ୍ୟ ତାଲିକା,
ହାତଯୋଡ଼ି ବାରମ୍ବାର ପ୍ରଣିପାତ କରେ
ଦେହରେ ଛୁଞ୍ଚାଡ଼ି ପାଣି କୃତକୃତ୍ୟ ହୁଏ
ପୁଲକିତ ହୁଏ ରୋମ ସେ ନାମ ସ୍ମରଣେ

ଗାଏ
"ଅଯୋଧ୍ୟା ମଥୁରା ମାୟା କାଶୀ କାଞ୍ଚୀ ଅବନ୍ତିକା
ପୁରୀ ଦ୍ୱାରବତୀ ଚୈବ ସପ୍ତୈତା ମୋକ୍ଷଦାୟିକାଃ"
ଗଡ଼ିଯାଏ ଶ୍ଳୋକ ତାର, କଳ କଳ ଜଳ ଧାର ସମ—
"ହରିଦ୍ୱାରେ ପ୍ରୟାଗେଚ ଗଙ୍ଗାସାଗର ସଙ୍ଗମେ
ପ୍ରୟାଗଂ ପରମଂ ତୀର୍ଥଂ ମୃତାନାଂ ଭକ୍ତିମୁକ୍ତିଦମ୍ ।
ସେବନାତ୍ କୃତପିଣ୍ଡାନାଂ ପାପଘ୍ନତ୍ କାମଦଂ ନୃଣାମ୍
ବାରାଣସୀ ପରଂ ତୀର୍ଥଂ ବିଶ୍ୱେଶୋ ଯତ୍ର କେଶବଃ ।
କୁରୁକ୍ଷେତ୍ରଂ ପରଂ ତୀର୍ଥଂ ଦାନାଦୌ ଭୁକ୍ତିମୁକ୍ତିଦମ୍
ପ୍ରଭାସଂ ପରମଂ ତୀର୍ଥଂ ସୋମନାଥୋଽସ୍ତି ଯତ୍ରତ
ଦ୍ୱାରକାଚ ପୁରୀ ରମ୍ୟା ଭକ୍ତିମୁକ୍ତି ପ୍ରଦାୟିକା
ପ୍ରାଚୀ ସରସ୍ୱତୀ ପୁଣ୍ୟା ସପ୍ତସାରସ୍ୱତୀ ପରଂ ।
କେଦାରଂ ସର୍ବପାପଘ୍ନଂ ଶମ୍ଭଳ ଗ୍ରାମ ଉତ୍ତମମ୍
ନରନାରାୟଣଂ ତୀର୍ଥଂ ମୁକ୍ତ୍ୟୈ ବଦରିକାଶ୍ରମମ୍ ।
ଶ୍ୱେତଦ୍ୱୀପଂ ପୁରୀ ମାୟା ନୈମିଷଂ ପୁଷ୍କରଂ ପରମ୍
ଅୟୋଧ୍ୟା ରୂପତୀର୍ଥନ୍ତୁ ଚିତ୍ରକୂଟଶ୍ଚ ଗୋମତୀମ୍ ।
ବୈନାୟକଂ ମହାତୀର୍ଥଂ ରାମଗିର୍ଯ୍ୟାଶ୍ରମମ୍ ପରମ୍
କାଞ୍ଚୀପୁରୀ ତୁଙ୍ଗଭଦ୍ରା ଶ୍ରୀଶୈଳଂ ସେତୁବନ୍ଧନମ୍ ।"

ସେହି ଦୃଶ୍ୟ ଦେଖିଲେ ଇଂରେଜ୍
ଭାରତର ଗ୍ରାମେ ଗ୍ରାମେ, ଦେଶେ ଦେଶେ,

ନଥିଲା ଭାଷାର ବାଡ଼ କାନ୍ଥ,
ନଥାଇ ବା ରାସ୍ତାଘାଟ, ରେଲ, ମଟର, ଦ୍ରୁତଗାମୀ ଯାନ
ସକୁଟୁମ୍ବେ ପାଦେ ଚାଲି ଚାଲି, ନବଡ଼ ଅରଣ୍ୟ ପଥେ,
ସହି ନାନା କଷ୍ଟ ଓ ବିପଦ, ରୋଗ ଆଉ ଚୋର ଦାଉ,
ରହି ରହି ସ୍ଥାନେ ସ୍ଥାନେ ସପ୍ତାହେ କି ମାସେ
ହୋଇ ଆପଣାର, ଏ ଦେଶରେ ନାନା ଘରେ, ଦେଇ ଆଉ ନେଇ,
ଭାଷା ନ ଜାଣିଲେ ସୁଦ୍ଧା କଥା କହି ହାତଠାରେ

ବର୍ଷ ବର୍ଷ ବାଟରେ ଚଲାଇ
ଦେଖିଥିଲେ ଏ ଦେଶର ଲୋକ ସମଗ୍ର ଭାରତ, ତୀର୍ଥ ବୁଲି ବୁଲି,
ନହୁଏ ସମ୍ପୂର୍ଣ୍ଣ, ଦୁର୍ଲଭ ଯେ ମାନବ ଜୀବନ
ନ ବୁଲିଲେ ଭାରତର ସବୁ ପ୍ରାନ୍ତ, ସବୁ ତୀର୍ଥ ସବୁ ଧାମ
ନ ଛୁଇଁଲେ ପାଦେ ଆଉ ମୁଣ୍ଡେ
ସମଗ୍ର ଦେଶର ସବୁ ପ୍ରାନ୍ତ ପବିତ୍ର ମୃତ୍ତିକା
ଦୁର୍ଲଭ ଯେ ସଂସାରରେ ଯେ ପୁଣ୍ୟ ଭାରତ ଭୂମି
ଦେବତାଙ୍କ ଈ । ଜନମାଏ
ଗାଆନ୍ତି ଦେବତା ବିଷ୍ଣୁପୁରାଣରେ
ଆଉ ଗାଏ ଭାରତ ଜନତା

"ଗାୟନ୍ତି ଦେବାଃ କିଲ ଗୀତକାନି
ଧନ୍ୟାସ୍ତୁ ତେ ଭାରତଭୂମି ଭାଗେ
ସ୍ୱର୍ଗାପବର୍ଗାସ୍ପଦମାର୍ଗଭୂତେ
ଭବନ୍ତି ଭୂୟଃ ପୁରୁଷାଃ ସୁରତ୍ୱାତ୍
ଆଉ ସେ ଗାଆନ୍ତି
"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"

୩୭

ଇଂରେଜ ଷର୍ଣ୍ଣେଷ୍ଟି ଦେଖେ ଏ ଦେଶର ଅତୀତକୁ,
ପଢ଼େ ସେ ସଂସ୍କୃତ, ପାର୍ଶୀ, ଉର୍ଦ୍ଦୁ,

ନାନା ପ୍ରଦେଶର ଭାଷା,
ସାହିତ୍ୟର ଗୋଟିଏ ଗୋଟିଏ ଖଣି
ପ୍ରତିଭାଷା, କେହି ନ୍ୟୂନ ନୁହେଁ,
କେତେ ଚର୍ଚ୍ଚି ଲେଖା ବହି,
କେତେ ଖାଲି ଭୁଣ୍ଡେ ଭୁଣ୍ଡେ

ସବୁଠି ସୁସ୍ପଷ୍ଟ ଧାରା ଏକ ଭାରତୀୟ ସଂସ୍କୃତିର, ବହୁଯୁଗରୁ,
ପରୀକ୍ଷିତ, ସୂକ୍ଷ୍ମ ଓ ବଳିଷ୍ଠ,
ମଣିଷ ଆଦର୍ଶ ଆଉ ମୂଲ୍ୟବୋଧ ଏକ ସବୁଠାରେ, ଦୁଇ ନୁହେଁ,
ଏଭଳି ଯେ ! ମଣିଷ ମନରେ ନୈରାଶ୍ୟ କି ପରାଜୟ କେବେ
ହେବ ନାହିଁ
ସବୁ ପଥ ରୁନ୍ଧିଯାଏ ଯେବେ,
ସେ ସଂସ୍କୃତି ଜାଗିଆସିବ ପୁଣି ମଣିଷକୁ ନୂଆ ବଳ ନୂଆ ଆଶା ଦେଇ
ପୁଣି ତାକୁ କରିବ ମହାନ୍ ।

ଅତୀତରେ ଅନ୍ଧାର ଯୁଗରେ ଏ ଦେଶ ଶାସନ
କେତେଥର ହୋଇଛି ଏକଛତ୍ର ଏକ ରାଜଚକ୍ରବର୍ତ୍ତୀ ବାହୁତଳେ,
କେତେବେଳେ ସେ ବିଭକ୍ତ ନିଜ ନିଜ ସ୍ଥାନୀୟ ଶାସନେ,

କେତେବେଳେ କେଉଁ ରାଜ୍ୟ ହୁଏ ପରାକ୍ରମୀ,
ନିଜେ ବଢ଼ି ବଢ଼ି ଉଠେ
ଅଙ୍ଗୀଭୂତ କରି କେତେ ଛୋଟିଆ ମୁଲୁକ,

ନୂଆ ନୁହେଁ, ଫିଉଡ଼େଲ୍ ଶାସନରେ ସବୁଠି ଯା'ହୁଏ,
ଦୁନିଆର ସବୁ ଦେଶେ,
କିନ୍ତୁ ତଫାତ୍ ଏତିକି—(ଇଂରେଜ ଟାଣିଲା ଗାର ଏଇ ତଥ୍ୟ ତଳେ)
ଯେହେତୁ ଏ ଦେଶସାରା, ସଂସ୍କୃତି ସବୁଠି ଏକ,
ଭିତରେ ଅଛି ସହନଶୀଳତା,
ଯେ ଯେତେ ବିଯୋଡ଼ ଭିନ୍ନ ସମସ୍ତିଙ୍କୁ ଆଦରି ନେବାକୁ
ଏକା ଘରେ ଭାଇ ଭାଇ ପରି

ଯେଉଁ ହେଲା ସାଆଁତଆ ସଙ୍ଗୀ,
ଏଠି ରାଜ୍ୟ ବଢ଼ି ଉଠେ ନାହିଁ ଭାଷା ଜାତି ଧର୍ମ ଭିତ୍ତି କରି,
ନହୁଏ ସୀମିତ ଅନ୍ୟ ଭାଷା ଅନ୍ୟ ଜାତି ଅନ୍ୟ ଧର୍ମ ପରି ହରି
ବିଦ୍ବେଷରେ
ଗୋଟିଏ ଆବୋର,

ଯେଉଁଭଳି ଅନ୍ୟତ୍ର,
ଆସିଲେ ମୁସ୍‌ଲିମ୍ ,
ତାହାଁରୁ କେତେକ ଅନ୍ଧ ଧର୍ମ ନାଁ ଧରି
ଭାଙ୍ଗିଲେ ଦେଉଳ, ବିନାଶିଲେ ମୂର୍ତ୍ତି
କିନ୍ତୁ କାହିଁ ? ତଥାପି ତ ନ ଗଜୁରେ ବିଦ୍ୱେଷ ବିହନ !

କେତେ ମୁସ୍‌ଲିମ୍ , ରାଜା ଜମିଦାର, ଥାପିଲେ ହିନ୍ଦୁ ଦେଉଳ
ମଠ ଦେବୋତ୍ତର,
କେତେ ବିଭାହେଲେ, ହିନ୍ଦୁ ଘରେ,
ବାଦ୍‌ଶା ଆକବରଙ୍କ ପରି, ଶିଖିଲେ ହିନ୍ଦୁ ଦର୍ଶନ,
ମନ କଲେ ରଚିବେ ସେ
ଏକ ଧର୍ମ, ସମସ୍ତିଙ୍କ ପାଇଁ,

ଅରଂଜେବଂଙ୍କ ବଡ଼ଭାଇ କବି ଆଉ ଦାର୍ଶନିକ ସୁପଣ୍ଡିତ ଦାରା
ଶୁକୋ ପରି,
ଚର୍ଚ୍ଚା କଲେ ବେଦୋପନିଷଦ, ସଂସ୍କୃତ ସାହିତ୍ୟ,
ସିଦ୍ଧ ସାଲବେଗ ପରି, ଆଦରିଲେ ହିନ୍ଦୁର ଦେବତା
ଜଣାଣ ରଚିଲେ—"ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ" ।

ବିଜୟନଗର ରାଜ୍ୟ ସେନାପତି ଅବ୍‌ଦୁଲ୍ ରଜାକ୍ ପରି
ପ୍ରାଣଦେଇ ଯୁଦ୍ଧକଲେ ମୁସ୍‌ଲିମ୍ ଶାସିତ
ବାହାମନି ରାଜ୍ୟ ବିରୁଦ୍ଧରେ
ହିନ୍ଦୁ ମୁସ୍‌ଲିମ୍ ଏକ ହେଲେ ସବୁ କ୍ଷେତ୍ରେ କାନ୍ଧରେ ଲଗାଇ କାନ୍ଧ

ୟୁରୋପ୍‌ର ଅଭିଜ୍ଞତା-ବଳେ ପରିପୁଷ୍ଟ
ରେସ୍‌-ଭାଷା-ଟେରିଟେରି ସମ୍ବଳିତ ନେସନ୍‌ ଥିଓରିର ପାଶ
ନ ପାଏ ଯେ ବାନ୍ଧି ମହାଭାରତ ଗୋଡ଼କୁ

କି ବୁଦ୍ଧି କରିବା ?—
କ'ଣ କଲେ ବଢ଼ିବ ବିଦ୍ୱେଷ
ଏଡ଼େ ଗଣ୍ଡି ଖଣ୍ଡ ଖଣ୍ଡ ହେବ ?
ସହଜ ହୋଇବ
ଡିଭାଇଡ୍‌ ଏଣ୍ଡ୍‌ ରୁଲ୍‌ ଫଣ୍ଡା !

ଭାବୁଁ ଭାବୁଁ ଦିଶିଗଲା ବାଟ !
ଏଇ ନୂଆ ପୋଷା ମାନିଥିବା 'ବ୍ୟାବୁ'ମାନେ,
ପଢ଼ିଥିବା ଏବସିଡି ଆଦ
ପିନ୍ଧି ଶିଖିଥିବା ପଟ୍‌ଲୋନ୍‌ ଓ କୋଟ୍‌
କାମକରି ଶିଖିଥିବା ଇଂରେଜ ଦପ୍ତରେ

କେତେ ଶୀଘ୍ର ଫ୍ଲପାନ୍ତ କହିଦେଲେ "ତୁମ ଭାଷା ତା ଭାଷାଠୁଁ
କେତେ ଚମତ୍କାର,
ତୁମର ଗୋଟାଏ ବିଶିଷ୍ଟ ସଂସ୍କୃତି ପରମ୍ପରାଗତ, ତାଠାରୁ ଭିନ୍ନ,
ସେ ତ ଅସଭ୍ୟ"

କି ଆଶାରେ ଜଳିଉଠେ ତାଙ୍କ ଆଖି
ଅଣ୍ଟିତଳେ ଝକଝକ କରେ ଛୁରୀ
ଯଦି କୁହାଯାଏ—"ମୁଁ ତୁମକୁ ରାଜା ବନେଇବି ତା ଗାଁରେ,
ଦେବି ଜମିଦାରି ବ୍ଲକର ଆଜ ଜାଗିର ଆଉ ଯେତେ ଯାହା
ତୁମେ ତାଙ୍କୁ କରିବ ଶାସନ"

ସେ ଅନୁଶୀଳନ, ହୋଇଲା ସଫଳ, ଦୁଶ୍ଚିନ୍ତାର ବେଳ ଗଲା,
ହାଲୁକା ହୋଇଲା ବୋଝ
ଦି ହ୍ୱାଇଟ୍‌ ମ୍ୟାନ୍‌ସ ବର୍ଡ଼ନ୍‌

ଏଥର ସବୁ ସହଜ, କିପ୍ଲିଙ୍କ ଭାଷାରେ
"ଏଇ ଆମ ନ୍ୟୁ କଟ୍ ସଲେନ୍ ପୀପ୍ଲସ୍
ହାଫ୍ ଡେଭିଲ୍ ଏଣ୍ଡ୍ ହାଫ୍ ଚାଇଲ୍ଡ୍
ଏଇ ଆମେ ନୂଆକରି ବନ୍ଦୀ କରିଥିବା ଲୋକେ,
ଏବେ ବି ଫଁ ଫଁ ଗରଗର,
ଏଇ ଯେ ଅସଭ୍ୟ ଅଶିକ୍ଷିତ ଦଳ ଯାହାଙ୍କ ଚରିତ
କେତେ ଅଂଶେ ସଇତାନ୍ କେତେ ଅଂଶେ ସାନ ପିଲାପରି"

ବାଇବେଲର ମନ୍ତ୍ରବଳେ ଏଥର ହୋଇଯିବେ ଥଣ୍ଡା,
ସବୁକାଳ ପାଇଁ ହେବେ ଗୁଣ୍ଡା,
ତାଙ୍କର ସେ ହିତ ପାଇଁ
ଇଂରେଜ୍ ଉପରବାଲା ଗୋଟେ ଅଣ୍ଡା—
ଭାଷା-କଳ,

ଆଗେ ସେ ଲେଖିଲା ଇତିହାସ
ନୂଆ ପ୍ରଣାଳୀରେ
ତା ନାଁ ଭାରତର ଇତିହାସ
କିନ୍ତୁ ସେଠି ବଣ୍ଟ ବଣ୍ଟ ହୋଇ ଅଲଗା ଅଲଗା
ସ୍ଥାନ ଧର୍ମ-ଜାତି-ଭାଷା ଅନୁସାରେ
ଲେଖାହେଲା ଗୋଟିଗୋଟି ହୋଇ ସ୍ୱତନ୍ତ୍ର ଐତିହ୍ୟ,
ଆଉ ସେଇ ଐତିହ୍ୟଧାରୀଙ୍କ ପୂର୍ବପୁରୁଷଙ୍କ ଶତ୍ରୁତା ଓ କଳିର କାହାଣୀ
ପରେ ଅବା ଶିକ୍ଷା ଦିଆଗଲା, "ତୁମେ ରଖ ତୁମ ଭାଷା ତୁମ ଧର୍ମ
ତୁମ ପରମ୍ପରାର ସ୍ୱତନ୍ତ୍ର ବିଶିଷ୍ଟତା
ବିଧାତାର ସେ ଅଭିନବ ସୃଷ୍ଟି, ଆଉ କଏ ତାହା ପରି !
ସେଇ ଉଦ୍ଦେଶ୍ୟରେ ହୋଇଲା ଘୋଷଣା, ରାଜକାର୍ଯ୍ୟ,
ନାନାବିଧ ଧର୍ମ ଆଉ ସଂସ୍କୃତିର ସଂରକ୍ଷଣ ହାଙ୍କିଦେଇ,
ଖଞ୍ଜାଗଲା କଳପାଇଁ ନୂତନ ଭିଆଣ,
ଯାହାକଲେ ଏକ ଭାଷାଭାଷୀ, ଏକ ପ୍ରାନ୍ତ ଲୋକ, ଏକ ଧର୍ମ
ଅବଲମ୍ବୀ, ଆଖି ଆଗେ

ଦେଖିଥିବେ ଏ ଜଗତ ଶବ୍ଦମୟ,
ନମିଶିବେ ଆଉ କାହା ଭୁଲେ—
ସେ ଜନ୍ମରୁ କୁଆ ହେଲେ, ବଢ଼ିଗଲେ ଏବେ ଆଉ ଭାରେ ।
ନାନା କ୍ଷେତ୍ରେ ମେଣ୍ଟ ହେଲା ଭାଷା ଅନୁସାରେ, ଧର୍ମ ଅନୁସାରେ
ଇଂରେଜୀ ପଢ଼ୁଆ ପଣ୍ଡିତପ୍ରବର କେତେ କେତେ ନାନା ସ୍ଥାନେ,
ଛପାଇଲେ ବହି,

ତଥ୍ୟ ଗାଇ —
ଆମେ ଯେଉଁ ଭାଷା କହୁଁ ସେହି ଭାଷା କହୁଥିବା ଲୋକେ
ଭାରତଯାକରେ ଶ୍ରେଷ୍ଠ ଆଉ ନୁହେଁ କେହି,
ସଂସ୍କୃତ ଭାଷାର କବି, ରାଁତି ଅମୁକ, ବଞ୍ଚିଥିଲେ ସଂସଦ କ
ପାଞ୍ଚଣ କରଷଛଲେ
ସେ ବ ଥିଲେ ଆମ ଭାଷାଭାଷୀ,
ଏ ଯେଉଁ ଭୂଖଣ୍ଡ ଅଛୁ, ଦେଖୁଅଛ ମାନଚତ୍ରେ,
ଏବେ ଯିନା ସେଠି ଅନ୍ୟ ଭାଷା ଚଳେ,
ଯୁଗେ ଯୁଗେ ଆମର ହିଁ ଭାଷା, ଚଳୁଥିଲା ସେଠି,
ଆମର ଗୋସାଏଁ ଗଢ଼ିଥିଲେ ସେ ଦେଶ ଦେଉଳ
ଜାଣି ନାହିଁ ?

ଯୁଆ ନାଁ ବିଦ୍ୱେଷ-ବମନ ଆଉ ବକରଣ ନୁହେଁ, ନୁହେଁ
ଭାରଖିସ୍ତାର ଗପ୍ପାଶ୍ରାଦ୍ଧ
ଯୁଆ ନାଁ ଅଇଷ-ହାସିକ-
ଗବେ-
ଷଣା

୬୬

ଜଳଯାଉ ପୋଡ଼ିଯାଉ ସବୁ
ସେ ଆବର୍ଜନାକୁଢ଼,

ଧୂଆହୋଇ ଶୋଧହୋଇ ଲୁପ୍ତ ହେଉ ସେହି ମାର୍କା, ଯେ ମୋହର,
ଏକ ଭାରତୀୟ ସଭ୍ୟତା ଓ ସଂସ୍କୃତି ଉପରେ
ନାନା ସ୍ଥାନେ
ଯେ ଦେଖାଏ ଏଇଟା ଓଡ଼ିଆ ଏଇଟା ବଙ୍ଗାଳୀ ଏଇଟା ତେଲୁଗୁ
ଏଇଟା ତାମିଲ୍ ଏଇଟା କେରଳୀ ଏଇଟା—
ଅମୁକ ଭାଷାଭାଷୀ ଜାତିର ସ୍ୱତନ୍ତ୍ର ଧନ
ମାଟି ଆଉ ଭାଷା ଆଉ ସଂସ୍କୃତି

ଜଳଯାଉ ବିଭେଦ ବିଦ୍ୱେଷର ସେଇ ପ୍ଲେଗ୍ ରୋଗ ବୀଜାଣୁର
ଟିକିନିଖି ଭ୍ରୂଣ
ପକାଅ ସେ ଯଜ୍ଞକୁଣ୍ଡେ ଆଣି
ସେଇ ଯେତେ ଦାମୀ ଦାମୀ ମୋଟା ମୋଟା ବହି ତଥ୍ୟ
ଆଉ ନକ୍ସା,
ପୋଡ଼ିଦିଅ ମନୁଁ,

ବେ-ଅକଲ୍ କ୍ଷୀଣ ଦୃଷ୍ଟି ଜନବଂଶ ଶତାବ୍ଦୀର
ସେ ସବୁ ସ୍ଥାନୀୟ ଗୀତି
ଭାରତର ଏକ ଭାଷାଭାଷୀଙ୍କର
ଅନ୍ୟ ଭାଷାଭାଷୀଙ୍କ ଉପରେ
ଅତୀତରେ କେବେ ପୌରୁଷ ଓ ବୀରତ୍ୱ ଦେଖାଇ
ଶ୍ରେଷ୍ଠ ହାଣିବାର
ସେ ଅଶ୍ରାବ୍ୟ ଗୀତି
ଏକ ଭାରତର ଜାତୀୟତାର ଶତ୍ରୁ ସେ,

ଭସ୍ମ ହେଉ ଅତୀତର ଶବ୍ଦ ଶବ୍ଦ ଭୁଲ୍
ଆମେ ଯୁଗେ ଯୁଗେ ଥିଲୁଁ ଆଉ ଅଛୁଁ
ଏକ ଭାରତୀୟ

ଆଜି ଅନ୍ୟ ପରିଚୟ ଆମ ନାହିଁ
ଆମର ଏ ସବୁ ଭାଷା, ଏ ଦେଶ ମଣିଷ ଯେଉଁଠି ଯାହା କହେ
ଯାହା କହୁଥିଲା ଏବେ ଆଜି କହୁନାହିଁ,
ଆମର ଏସବୁ କୀର୍ତ୍ତି, ଦେଉଳ ସାହିତ୍ୟ ଆଦି,
ଆମର ଏ ସବୁ ନଦୀନଦୀ, ପାହାଡ଼ ଜଙ୍ଗଲ କ୍ଷେତ,
ଏ ସମୁଦ୍ର ଏ ଆକାଶ
ହାଡ଼ ବାଡ଼ ନାହିଁ, ସବୁଠି ସବୁରି ଭାଇ ବନ୍ଧୁ, ଘର ଆଜି ଦେଶ,
ଯେ ରହିବ ଯହିଁ, ଖଟିବ ଖାଇବ, ସଂଚିବ, ବଢ଼ିବ,
ତା’ ଇଚ୍ଛା
ସବୁବେଳେ ତାକୁ ସ୍ୱାଗତଂ,

ସେ ତ ତା’ର,
ଜନ୍ମଗତ ଅଧିକାର
ତା’ର ଅନାଦି ଅନନ୍ତ
ପୂର୍ବପୁରୁଷଙ୍କ
ପବିତ୍ର ଭାରତ ଭୂଇଁ
ଅନ୍ୟ ନାମ ନାହିଁ ଏଥି ।

ଏ ସୃଷ୍ଟିର ସ୍ୱାଭାବିକ
ନିୟମ କ୍ରମରେ
ନିତି ଲେଖାହୁଏ
ନୂତନ ପୁରାଣ,
ମଣିଷ ଏକ ଚଳନ୍ତା ପ୍ରାଣୀ,
ସ୍ଥାଣୁ ନୁହେଁ,
ଯଦି କେବେ ଏ ଦେଶର କେଉଁ ଶାସ୍ତ୍ର
ବିରୋଧ କରିବ ଏ ସଂସ୍କୃତିର
ସେ ଶାସ୍ତ୍ର
ପୋଡ଼ା ହେବ
ଲେଖାହେବ ନୂଆ ଶାସ୍ତ୍ର,

ଯଦି କେବେ ଏ ଦେଶର କେଉଁ ଦେବତା
ବିରୋଧ କରିବ ଏ ସିଦ୍ଧାନ୍ତର
ସେ ଦେବତା
ନିପାଣିଆ ହୋଇ
ରଖାହେବ ମ୍ୟୁଜିଅମ୍ ଘରେ,
ମଣିଷ ଗଢ଼ିବ ନୂଆ ଦେବତା, ପାରିଥିଲେ ପାରିବ,

ଭାରତର ଜଓ୍ୱାନ୍ କର୍ତ୍ତୃକ ପାକିସ୍ଥାନଠାରୁ ଧୃତ ଆମେରିକାନ୍
ପ୍ୟାଟନ୍ ଟ୍ୟାଙ୍କ୍ ପରି
ମଣିଷ ମଣିଷକୁ ଡାକୁଛି, ସଂସାରରେ କିଛି ନାହିଁ
ଯେ ମନ୍ଦିରେ ଠିଆହୋଇ ରହିବ, ପାଟନ ପରି

ଲେଖାହେବ ଏଇ ଭାରତରେ, ନୂଆ ଇତିହାସ
ପ୍ରକୃତ ଇତିହାସ,
ଅସଲ ଇତିହାସ
ସେ ଇତିହାସ ଯୁଗେ ଯୁଗେ ଏ ଦେଶର କୋଟି କୋଟି ମଣିଷଙ୍କର,
ସେ ଇତିହାସ ଏକ ଅଖଣ୍ଡ ଭାରତୀୟତାର,
ଖଣ୍ଡ ଖଣ୍ଡ ସ୍ଥାନୀୟତାର ନୁହେଁ ।

ସେ ପ୍ରଚାର କରିବ ଏକ ଚିରନ୍ତନ ସତ୍ୟ
କୋଳ ଖାଇ କେନ୍ଦୁ କୋଳ ମଞ୍ଜି ପୋତିନାହିଁ,
ସମସ୍ତେ ଏ ଭାରତରେ ସମନ୍ୱିତ ହୋଇଛନ୍ତି,
ଯେତେ ଜାତି, ଧର୍ମ, ଭାଷା ଆଜି ଯେତେ ଯାହା
ହୋଇଛନ୍ତି ଭାରତୀୟ,

ଭାରତ ମାତାଙ୍କ ଜୟ
ଭାରତ ଲକ୍ଷ୍ମୀଙ୍କ ଜୟ
ଭାରତମାତାର ଜୟ
ମା ଭାରତ ଆସ୍ଥା ଜଣା ମଣିବେ

ଊନବିଂଶ ଶତାବ୍ଦୀର ଆଜି ଯେତେ ସାନ ସାନ ମାତା
ତାଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ପାଇଁ,
ଯେମାନେ ଭାରତମାତାର ଶରୀରରୁ ଉତ୍ପନ୍ନା ହୋଇଥିଲେ
ସ୍ୱାଇପର,
ସେହି ଶରୀରରେ ପୁଣି ଲୀନ ହୋଇଯାଉଛନ୍ତି

ପୂର୍ବ କାଳରେ—
ଶୁମ୍ଭ ଦୈତ୍ୟ ଆକ୍ରମଣ କଲାବେଳେ,
ତାକୁ ନିପାତ କରିବା ପୂର୍ବରୁ
ଦେବୀ କହିଥିଲେ ତାକୁ
ମୁଁ ନିଜ ବିଭୂତି ବଳରେ ନିଜ ତେଜରୁ ବ୍ରାହ୍ମୀ, ଐନ୍ଦ୍ରୀ, ବାରାହୀ,
ଚାମୁଣ୍ଡା ଆଦି ନାନା ରୂପ ସୃଷ୍ଟି କରିଥିଲି,
ଦେଖ୍ ସେ ସମସ୍ତଙ୍କୁ ନିଜ ଭିତରେ ଆହରଣ କରି ନେଲି
ମୁଁ ଏକୁଟିଆ ହୋଇଛି
କିନ୍ତୁ ତୁ ଯୁଦ୍ଧରେ ସ୍ଥିର ହୋଇ ରହ

ଏକୈବାହଂ ଜଗତେଽତ୍ର ଦ୍ୱିତୀୟା କା ମମାପରା
ପଶ୍ୟୈତା ଦୁଷ୍ଟ ମୟ୍ୟେବ ବିଶନ୍ତ୍ୟୋ ମଦ୍ ବିଭୂତୟଃ
ତତଃ ସମସ୍ତାସ୍ତା ଦେବ୍ୟୋ ବ୍ରହ୍ମାଣୀ ପ୍ରମୁଖା ଲୟଂ
ତସ୍ୟା ଦେବ୍ୟାସ୍ତନୌ ଜଗ୍ମୁରେକୈବାସୀତ୍ତଦାମ୍ବିକା
ଦେବ୍ୟୁବାଚ
ଅହଂ ବିଭୂତ୍ୟା ବହୁଭିରିହ ରୂପୈର୍ଯଦା ସ୍ଥିତା
ତତ୍ସଂହୃତଂ ମୟୈକୈବ ତିଷ୍ଠାମ୍ୟାଜୌ ସ୍ଥିରୋଭବ

ସେହି କଥା ଆଜି ଶତ୍ରୁକୁ କହୁଛି 'ଭାରତ'
ଭାରତ ଆଜି ଯୁଦ୍ଧ କରୁଛି
ଦେବୀ ଯୁଦ୍ଧ କରୁଛନ୍ତି
"ବିଜୟସ୍ତାସ୍ତୁ ନ ସଂଶୟଃ"

ଭଗବାନ ଯୁଦ୍ଧ କରୁଛନ୍ତି
"ମଦ୍ଭୈର୍ବୈତେ ନହତା ପୂର୍ବମେବ
ନମିତ୍ତ ମାତ୍ରଂ ଭବ ସବ୍ୟସାଚି"

୩।

ଅମୃତ ସନ୍ଧାନ ପାଇଁ ପ୍ରୟୋଜନ
ସମୁଦ୍ର ମନ୍ଥନ
ଆସିଲା ସେ ବେଳ ଚୀନ୍ ଯେବେ ଭାରତକୁ ଆକ୍ରମଣ କଲା
ନେଫାରେ ଓ ଲଦାଖ୍‌ରେ,
ଘରେ ଘରେ ଫାଟ ଯୋଡ଼ାଯୋଡ଼, ହୃଦୟେ ହୃଦୟେ,
ଅନ୍ତରରେ ତୀବ୍ର ଆନ୍ଦୋଳନ,
କଠୋର ଆତ୍ମ ସମୀକ୍ଷା, ଠିକ୍ କ'ଣ କ'ଣ ଭୁଲ୍,
ମନୁଷ୍ୟ-ସମ୍ପର୍କ ତଳେ
କ'ଣ କଲେ, ରହିବ ଜୀବନ, ହସୁଥିବ ବସୁନ୍ଧରା ସୁଖେ ।

କେତେ ସୁଆଦିଆ ମନଭୁଲା କଥା —
ଯଥା ହିନ୍ଦୀ-ଚୀନୀ ଭାଇ ଭାଇ
ଜଗିଅଛୁ ପଞ୍ଚଶୀଳ ଭାରତ ସୀମାନ୍ତ
ମୁଣ୍ଡାଇଛୁ ଶାନ୍ତି
ଟେକ ବିରାଟ ପାଞ୍ଚଟି ଫଣା
ଶୋଇଥାଅ ବିଶ୍ୱବାସୀ ନିର୍ଘୋଡ଼ ନିଦରେ
ଅଚିନ୍ତାରେ ସ୍ଥିର ବିଶ୍ୱାସରେ,

ଯଥା—ଫରେନ୍ ପଲିସି ଆମ ଅତି ବିଚକ୍ଷଣ,
ସମସ୍ତେ ଆମର ବନ୍ଧୁ
ପଡ଼ିବେ ପିଠରେ, ଆସିବା ମାତ୍ରକେ ଆମ ଉପରକୁ ଆଞ୍ଚ,
ସତେବା ସମସ୍ତେ ଆମ ଧରମ ବେଟିଆ
ଅଥବା ସେମାନେ ଆମ ରୂପ ଗୁଣେ ବିମୋହିତ,

ସମୋନ୍ନତ ଆମ ଶାସନରେ, କି ସୁନ୍ଦର
ସଙ୍ଗୀତ ଓ ଉଦ୍ଦୀପନାମୟ,
ଅସୀମ ଅସମାପିକା ଚିରନ୍ତନ ସନ୍ଦସି ଓ ଭୂମାର ଗଦନମ୍ପୁ
କବି ଭୂଣ୍ଡେ ତୃପ୍ତି ବାକ୍ୟ ପର
ଭଲ ଶୁଭେ
ଡୋମେଷ୍ଟିକ୍ ପଲିସି ତ ବଜ୍ରଠାରୁ ଟାଣ,
କାହିଁ ଅଛି ତା'ର ପଟାନ୍ତର !

ଭାଷା ସୂତ୍ରରେ ଆମେ ପ୍ରଦେଶ ଗଢ଼ିଛୁ
ଭୂଗର୍ଭକୁ ବୋଲି ଚେର ମେଲି
ଦୃଢ଼େ ଗଛମାନ ହୋଇଅଛି ଠିଆ
ଫଳାଛି ବିବିଧ ଫଳ ସୁମିଷ୍ଟ ସୁଦୃଶ୍ୟ,
ରାମରାଜ୍ୟ ବହୁତ ଆଗେଇଲାଣି,
କଳାବଜାର କି ଲାଞ୍ଚ ଓ ଦୁର୍ନୀତି,
ଏ ଦେଶରେ ନାହିଁ ଆଜ,

ନିର୍ମମ ହାତରେ ଟାଙ୍ଗିଚୁ ତା' ଗୁଳିଖିଆ ଅବୟବ ମର ଦେହ
ଉଞ୍ଚ ଉଞ୍ଚ ଗଛ ଦେଖି ସେଠି
ଶ୍ୱେତ ସବୁ ଆଦର୍ଶ ଓ ମନ୍ତ୍ର
ଶ୍ୱେତ ଓ ଶୃଙ୍ଖଳ
ଝଟକୁଛି କାନ୍ଥେ କାନ୍ଥେ
ଖାଦ୍ୟ ଆଜ ବସ୍ତ୍ରର ସମସ୍ୟା
ସମାହିତ କେଉଁ କାଳୁ

ଯାହା ଖାଉଁ
ସବୁ ଆମ ବାରିର ଫସଲ
ଯଦି କିଛି ଲୋଡ଼ା ବା ବଳକା,
ଆମେରିକା ଅଛି,
ଯଦି ବନ୍ଧୁ ବାସଗୃହ କରିଛି ଉନ୍ନତ କେତେ

ଅନାଅଁ ପ୍ଲେ ଜନ୍ଟ୍ ଭବନ
ଆଜ କେତେ ଢେଙ୍ଗା କୋଠାମାନ,
ଆସୁଛି ତା ପଛକୁ ପଛକୁ ଦେଖ
ଅଗ୍ନି ଉପସ୍ଥାନ ଯେତେ ଗ୍ରାମ ବାସସ୍ଥଳୀ
ଇଲେକ୍ଟ୍ରିକ୍ ଆଲୁଅରେ ଉଦ୍ଭାସିତ,
ଘରେ ଘରେ ଟ୍ୟାପ୍ ଖୋଲିଦେଲେ
ଯେଡ଼େ ଗାଁ ଗହଳରେ,
ଭଷ୍ ଭଷ୍ ବୁନ୍ଦେ ଶୁଦ୍ଧ ପାଣି
କଲେର ଆସିବ କାହୁଁ ?

ଉତ୍ପାଦନ ବହୁଗୁଣେ ଯାଇଅଛି ବଢ଼ି
ଦରଦାମ୍ ଖସିଅଛି ପଡ଼ି ରସାତଳେ
ନିଶ୍ଚିନ୍ତ ଦରିଦ୍ର କୁଲି ମଜୁରିଆ
କୃଷି ଓ ବେପାର
ଆଜ କୃକରିଆ
ଗାଁ' ବାଲା ଅବା ସହରିଆ

ଆପଃ ଶାନ୍ତ ପୃଥିବୀ ଶାନ୍ତ ସବୁ ଶାନ୍ତ, ସୁଖ ଓ ସମୃଦ୍ଧି
ଗଡ୍ ଇଜ୍ ଇନ ହିଜ୍ ହେଭନ୍
ଅଲ୍ ଇଜ୍ ରାଇଟ୍ ଓ୍ୱିଥ୍ ଦ ଓ୍ୱର୍ଲଡ୍.

ଚୀନାର ସେ ଅତର୍କିତ କ୍ରୂର ଆକ୍ରମଣ
ମିତ୍ର ମୈତ୍ରୀ ବିଶ୍ୱାସ ଘାତକ
ଅସଭ୍ୟ ବର୍ବର
ଭାରତର ସେ ସୁପ୍ତି ନିଦରେ
କସିକ' ପାହାରେ ଦେଲା,
ଦେଖିଲା ଚମକ, ଖୋଲା ଆଖି ଆଗେ,
ନାହିଁ ସ୍ୱପ୍ନ ଅବା ଜହ୍ନ ଅବା
ସବୁଜତା ଧୂଆଁ

ନାହିଁ ମିଷ୍ଟିକ୍ କବିତାର ମିଷ୍ଟ ସୁର
ମାନେ ମିନା ବୁଟି ହୁଏ ନାହିଁ
ନାହିଁ ପ୍ରୀତି ଅଭିସାର ଗୀତ
କୁଞ୍ଜବନ, ଯମୁନା ପୁଳିନ,
ନାହିଁ ଆଖି ଆଗେ, ଫମ୍ପାଖୋଳ ଧୋବ ଫରଫର
ଏକା ଧୋବା ମାର୍କା ମଦ୍ଦ
ଆଗେଇ ଆସୁଛି କଳା କଟି କଟି ବକଟାଳ
ଗୋଟାଏ ବନ୍ଧ୍‌କର ବ୍ୟାରେଲ୍—
ଚୀନା ଭାଇର ବୃଦ୍ଧ ଭାଇକୁ—
ମାଓସେତୁଂଙ୍କ ଚୀନ୍‌ର
ନେହେରୁଂକ ଭାରତକୁ
ସଂ
ଯୋ
ଜା
ଅଥବା ସେ ଗୁରୁ ଦକ୍ଷିଣା
ବୌଦ୍ଧ ଚୀନାର
ଭଗବାନ ବୁଦ୍ଧଙ୍କ ଜନ୍ମସ୍ଥାନକୁ
ଦିନର ଦାଉ ଦାଉ ଖରାରେ
ଥିଏଟର ଘର ଦେଖାଯାଏ
ତା'ର ଭିତର ଆଉ ବାହାର
ତା'ର ଅଂକା ହୋଇଥିବା ସୀନ୍ ଗୁଡ଼ାକ
ଆଉ ଏଇ ଯେଉଁମାନେ ପାହାନ୍ତିଆଯାକେ ଥିଏଟର କରୁଥିଲେ
କେମିତି ସେମାନେ କଳ ଚଳେ
ମୁହଁରୁ ଧୋଇ ପକାଉଛନ୍ତି ରଙ୍ଗଗୁଡ଼ାକ,

ଅବରଖ ଗୁଣ୍ଡା ତଥାପି ଝକଝକ କରୁଛି
ଗାଲରେ ଓଠରେ ତଥାପି ଲାଗିଛି
ରଙ୍ଗ ଗୁଡ଼ାକ,
ଧ୍ୱାବରେ କ ମକ୍‌କା ଘର କ ମୁକାପର

ନକଲ ଦାନ୍ତ ସେଟ୍
ପାକୁଆ ପାଟିରୁ ଖୋଲାହୋଇ ବେସିନ୍‌ରେ ପାଣିରେ ଧୂଆ ହୋଇଛୁ
ବ୍ୟବହାର ହେବ ପୁଣି କେବେ ସତ ହେଲେ ।

ଆଜ ଯେ ସତ ଆସିବ ନାହିଁ,
ଭାରତ ଚେଇଁ ଉଠିଛୁ ସବୁଦିନ ପାଇଁ
ଭାରତ ସୂର୍ଯ୍ୟ ଆଜ ବିଶ୍ରାମ ନେବ ନାହିଁ,
ସବୁବେଳେ ଦିନ କରିଥିବ,
ଆଜ ପ୍ରେ ଜଓ୍ୱାନ୍
ଭାରତମାତାର ପୁଅ
ଅସୁର ବିଧ୍ୱଂସୀ ଶ୍ରମକାନ୍ତ
ସେ ବନ୍ଧୁକ ଧରିଛୁ ।

୩୯

କେଉଁ ଦୂର ଅତୀତ ଅତୀତେ
ଯେତେବେଳେ ଲେଖାହେଲା ସଂସ୍କୃତରେ ମହାଭାରତ
ଓ ମନୁସ୍ମୃତି
ବାଣିଜ୍ୟ ସମ୍ପର୍କ ଥିଲା ଚୀନ୍ ଓ ଭାରତ ମଧ୍ୟରେ
ଚୀନାଂଶୁକ,
ପରିଚିତ ଥିଲା ଏ ଦେଶର ବିପଣୀମାନାରେ ।

ତା'ପରେ ଆସିଲାବେଳ, ଖ୍ରୀଷ୍ଟ ଅବ୍ଦ ପଞ୍ଚଷଠି ସାଲ
ଚୀନ୍ ଦେଶ ହାନ୍‌ବଂଶୀ ସମ୍ରାଟ ମିଂତି
ଭାରତରୁ ନିମନ୍ତ୍ରଣ କରି ନେଲେ ଦୁଇ ବୌଦ୍ଧ ଶ୍ରମଣ
ଧର୍ମରକ୍ଷ ଓ କାଶ୍ୟପ ମାତଂଗ
ପ୍ରଚାରିତ ହେଲା ବୌଦ୍ଧ ଧର୍ମ ଚୀନ୍ ଦେଶେ ।
ଦ୍ୱିତୀୟ ଶତାବ୍ଦୀଠାରୁ ବୌଦ୍ଧଧର୍ମ ହେଲା ରାଷ୍ଟ୍ର ସ୍ୱୀକୃତ
ଟଙ୍ଗ୍-ଚିନ୍‌ବଂଶୀ ପରାକ୍ରମୀ ସମ୍ରାଟ୍ ଗଣ

ହେଲେ ବୌଦ୍ଧ
ପୁଣି ବୌଦ୍ଧଧର୍ମ ପ୍ରଚାରକ
ରୁ ଓ ମିନ୍ ଏ ଦୁଇ ସମ୍ରାଟ୍
ଚତୁର୍ଥ ଶତାବ୍ଦୀ ଖ୍ରୀଷ୍ଟାବ୍ଦରେ
ବସାଇଲେ ନିଜ ଦେଶେ ନାନା ବୌଦ୍ଧମଠ
ଏଣା ନନ୍ କିଂ ଓ ସ୍ଚାଂନାନ୍‌ରେ ନଅକୋଡ଼ି ଚତ୍ୱ

ଖ୍ରୀଷ୍ଟ-ଅବ୍ଦ ଚୂରଶହ ଏକରୁ ବାର
ଚୀନ୍ ଗଲେ ଭାରତୀୟ ପଣ୍ଡିତ ପ୍ରବର
ବୌଦ୍ଧ ଧର୍ମ ଶାସ୍ତ୍ର ଅଦ୍ୱିତୀୟ ବୋଧା
ଶ୍ରୀ କୁମାରଜୀବ
ବତାଇଲେ ମହାଯାନ ପନ୍ଥା
ଚୀନ୍ ଭାଷାରେ ଅନୁବାଦ କଲେ
ସଂସ୍କୃତରୁ ଶତାଧିକ ଗ୍ରନ୍ଥ

ଚତୁର୍ଥରୁ ଷଷ୍ଠ ଖ୍ରୀଷ୍ଟାବ୍ଦ, ତିନିଶହ ବର୍ଷ
ଚୀନ୍ ଗଲେ ଭାରତରୁ କେତେ ଯେ ବୌଦ୍ଧ ଆଚାର୍ଯ୍ୟ
ଧର୍ମଗୁରୁ-ଗଣ
ତାର ସଂଖ୍ୟା ନାହିଁ
ସଂଘଭୂତି, ଗୌତମ ସଂଘଦେବ, ପୁଣ୍ୟତ୍ରାତା
ବିମଳାକ୍ଷ, ବୁଦ୍ଧଜୀବ, ଧର୍ମମିତ୍ର, ଧର୍ମାଯଶ,
ଧର୍ମକ୍ଷେମ, ଗୁଣବର୍ମଣ, ଗୁଣବର୍ମଣ, ଗୁଣଭଦ୍ର,
ପ୍ରଜ୍ଞାରୁଚି, ଉପଶୂନ୍ୟ, ଜ୍ଞାନଭଦ୍ର,
ଜ୍ଞାନଯଶଃ, ଯଶୋଗୁପ୍ତ, ପାରମାର୍ଥ,
ରାଜପୁତ୍ର ବୋଧିଧର୍ମ ।

ପଞ୍ଚମ ଶତାବ୍ଦୀଠାରୁ ଭାରତ ହୋଇଲା
ଚୀନା ବୌଦ୍ଧ ପଣ୍ଡିତଙ୍କ ତୀର୍ଥଭୂମି,
ବର୍ଷପରେ ବର୍ଷ ଆସିଲେ ପରିବ୍ରାଜକ ଦଳଦଳ

ଚାଲି ଚାଲି ବୁଲିଲେ ଭାରତ
ଅଧ୍ୟୟନ କଲେ ବସି ବୌଦ୍ଧଶାସ୍ତ୍ର, ସଂସ୍କୃତ ଓ ପାଲି,
ହୁଏନ୍‌ସାଂ ପରି, କେହି ମଧ୍ୟ ଲେଖିଗଲେ
ସସ୍କୃତରେ ଝଚାଙ୍ଗ ଦର୍ଶନ
ଖ୍ରୀଷ୍ଟଅବ୍ଦ ତିନ ଶହ ଅନେଶ୍ୱତ, ଆସିଲେ ଫା-ହିଏନ୍
ସଙ୍ଗେ ଏକ ଚୀନା ସୁଧୀଦଳ,

ଲଉ-ପାଓ ନୁହଁ, ପାଓ ୟୁନ ପ୍ରମୁଖ
ଚାରିଶହ ଚାରି ଅବ୍ଦ, ଆସିଲେ ଚଂ-ମଂ
ଲେଉଟିଲେ କୋଡ଼ିଏ ବର୍ଷରେ
ଚାରିଶ କୋଡ଼ିଏ, ଆସିଲେ ଫା-ୟୁଂ
ସଙ୍ଗେ ଥିଲେ ପଞ୍ଚବିଂଶ ବୌଦ୍ଧିକ ଶ୍ରମଣ

ତାପରେ ତ ଆଉ କେତେ କେତେ,
ଛଅଶହ ଅଣତିରିଶ ଖ୍ରୀଷ୍ଟାବ୍ଦେ
ଆସିଥିଲେ ସୁପ୍ରସିଦ୍ଧ
ହୁଏନ୍-ସାଂ
ଥିଲେ ଏଠି ସତର ବରଷ
ତାପରେ ବି ଚାଲିଥିଲା ଧାର
ଛଅଶହ ଏକସ୍ତରିରେ ଇ-ସିଂ ଆସିଲେ ।

ସପ୍ତମରୁ ଚତୁର୍ଦ୍ଦଶ ଶତାବ୍ଦୀର ଶେଷଯାକେ
ଜାଭା, ବାଲି, ସୁମାତ୍ରା, ବର୍ଣ୍ଣିଓ,
ମଳୟ, ଶ୍ୟାମ କମ୍ବୁଜ ଆବୋର
ଚୀନ୍‌ରୁ ଲାଗି
ଥିଲା ଏକ ଭାରତସ୍ଥ ଶୈଳେନ୍ଦ୍ର ସାମ୍ରାଜ୍ୟ
କଳିଙ୍ଗର ଶୈଳୋଦ୍‌ଭବ ବଂଶ
ତାର ସ୍ଥାପୟିତା
ଉତ୍ତରରେ ତାମ୍ରଲିପ୍ତ ଦକ୍ଷିଣରେ ଦନ୍ତପୁର ଆନ୍ଧ୍ର

ଯୋଗାଶ୍ରପୁଁ
ଯାଇଥିଲେ ସେମାନେ,
ଚୀନ ଦେଶ ସଙ୍ଗେ ଥିଲା ନାନାବିଧ ସମ୍ପର୍କ
ଚୀନ୍ ନୁହେଁ ଅପରିଚିତ,
କେତେ ଚିହ୍ନାଜଣା,
ଉଭୟ ଦେଶର ସଂସ୍କୃତିରେ ପରସ୍ପର ସଙ୍ଗେ
ଗଭୀର ସମ୍ବନ୍ଧ ଥିଲା ।

୪୦

ସେ ଚୀନ୍
ବୁଦ୍ଧିମାନ୍ ପଣ୍ଡିତ ଚୀନ୍,
ଧାର୍ମିକ ଚୀନ୍,
ଶାନ୍ତ ଓ ସଂସ୍କୃତିର ଦେଶ
ଆଜ ନାହିଁ,
ସେ ଗୋଟାଏ ଭିନ୍ନ ଚୀନ୍,

ସେ ଚୀନ୍‌ରେ ଚଳୁଥିଲା ଖ୍ରୀଷ୍ଟଜନ୍ମର ସାଢ଼େ ପାଞ୍ଚଶ ବର୍ଷ ଆଗରୁ
ମନୁଙ୍କ ପରି କନ୍‌ଫୁଚିଅସଙ୍କ ମତ
ଯେ କହେ
ମଣିଷର ମାପ ଆଉ କିଛି ନୁହେଁ,
ମଣିଷର ମାପ ମଣିଷ
ତାର ମଣିଷପଣିଆ
ଚଳୁଥିଲା ସେଠି କରୁଣାର ଅବତାର
ଭଗବାନ ବୁଦ୍ଧଙ୍କ ବାଣୀ
ନଥିଲା ମାଓ ସେ ତୁଂଙ୍କ ଆବିଷ୍କାର
**ଯେ ଦୁନିଆରେ ବନ୍ଧୁକ ହିଁ ସବୁ,**
ମଣିଷ ସଭ୍ୟତାର ଜନ୍ମ ବନ୍ଧୁକର ବ୍ୟାରେଲ୍ ଭିତରୁ

ନଥିଲା ଲାଓ ଗାଓଂଙ୍କ ରାଜଧର୍ମ ପ୍ରକରଣ
ସତେ ଅବା ଚୀନା ଭାଷାରେ ହିଟ୍ଲର ମେଇନ୍ କାମ୍ଫ୍
ଯେ କଳେ ବଳେ କୌଶଳେ
ମାର୍କିନ୍ ଓ ୟୁରୋପକୁ କାବୁକରି
ଅନ୍ୟମାନଙ୍କୁ ଉପେକ୍ଷଇ ପୁଣି ଚୀନ୍ର ତଳିଆ କରି ରଖି
ପୃଥିବୀରେ ଚୀନ୍ର ପ୍ରତିଷ୍ଠା ହିଁ
କରିଥିଲା ଏକମାତ୍ର ଲକ୍ଷ୍ୟ ।

ସନ୍ଥ କନ୍ଫୁସିଅସ୍ କହିଥିଲେ—
"ତାକୁ କହନ୍ତି ସେ ଜାଣେ
ଯେ ଜାଣେ ସେ କ'ଣ ଜାଣେ
ଆଉ କ'ଣ ଜାଣେ ନାହିଁ ।

ଯେ ଭୁଲ୍ କରି ତାକୁ ଶୁଧାରେ ନାହିଁ
ସେ ତଦ୍ଦ୍ୱାରା ଆଉ ଗୋଟିଏ ଭୁଲ୍ କରେ ।

ସଂସାରରେ ସିଦ୍ଧ ସନ୍ଥ ମିଳିବାର ଆଶା ଅଳ୍ପ
କିନ୍ତୁ ମୁଁ ସନ୍ତୁଷ୍ଟ ହେବି
ଯଦି ମତେ ମିଳିଯିବେ ଜଣେ ଭଦ୍ର ମଣିଷ
ଯେଉଁ ମଣିଷର ଅନ୍ତର ସୁନ୍ଦର
ସେ ଯେତେବେଳେ କହିଲେ
କିଛି ସୁନ୍ଦର କଥାହିଁ କହିବ
କିନ୍ତୁ ଯେଉଁ ମଣିଷ ସୁନ୍ଦର ସୁନ୍ଦର କଥା କହେ
ତା'ର ଅନ୍ତର ଯେ ନିଶ୍ଚୟ ସୁନ୍ଦର ଏପରି ନୁହେଁ ।

ଯେ ପ୍ରକୃତରେ ମହତ୍
ସେ ସବୁବେଳେ ସାହସୀ
କିନ୍ତୁ ଯେ ଖାଲି ସାହସୀ
ସେ ସବୁବେଳେ ମହତ୍ ଏପରି ନୁହେଁ

ସତ୍ୟ (ବା ଜ୍ଞାନ) କ'ଣ ଯେ ଜାଣେ
ତା'ଠୁଁ ଭଲ ସେହି ଲୋକ ଯେ ସତ୍ୟ (ବା ଜ୍ଞାନକୁ) ଶ୍ରଦ୍ଧା କରେ,
ତା'ଠୁଁ ଆହୁରି ଭଲ ଯେ ତହିଁରେ ଆନନ୍ଦ ପାଏ ।

ଭଲ ଲୋକଟିଏ ଦେଖିଲେ ତାକୁ ଅନୁକରଣ କର,
ମନ୍ଦ ଲୋକଟିଏ ଦେଖିଲେ ନିଜ ଭିତରେ ଖୋଜି ଦେଖ
ତୁମଠିଁ ସେ ଦୋଷ ଅଛି କି ନାହିଁ ।

ମନୁଷ୍ୟ ହିଁ (ନିଜ ଆଚରଣ ଦ୍ୱାରା) ସତ୍ୟର ମହତ୍ତ୍ୱ ବଢ଼ାଏ,
(ଅନାଚରିତ) ସତ୍ୟ ମନୁଷ୍ୟର ମହତ୍ତ୍ୱ ବଢ଼ାଏ ନାହିଁ ।

ପର ତୁମ ପ୍ରତି ଯେଉଁପରି ଆଚରଣ କରିବା ତୁମେ ଚାହୁଁନାହିଁ
ପର ପ୍ରତି ତୁମେ ସେପରି ଆଚରଣ କରନାହିଁ,
ପଦେ କଥାରେ କହିବାକୁ ହେଲେ
ଜୀବନ ପାଇଁ ଆଦର୍ଶ ନୀତି ଏତିକି ।

ନୈତିକ ସଂଯମର ନିକଟତମ, ନମ୍ରତା ।
ପ୍ରକୃତ ମଣିଷପଣିଆର ନିକଟତମ, ସରଳତା ।
ପ୍ରକୃତ ଆନ୍ତରିକତାର ନିକଟତମ, ବିଶ୍ୱାସ ରଖିବା ।
ଯଦି ଜଣେ ଯତ୍ନ ସହକାରେ, ଆଚରଣ କରିବ ଏ ତିନିଗୁଣ,
ତେବେ କେବେ କେବେ ହେଲେ ମଧ୍ୟ ଭୁଲ୍,
ଅସଲ ମଣିଷପଣିଆଠୁଁ ସେ ନଥିବ ଦୂରରେ ।

ଯେ ଜ୍ଞାନୀ ତା'ର ସଂଶୟ ନ ଥାଏ,
ଯେ ଅସଲ ମଣିଷ ତା'ର ଦୁଃଖ ନ ଥାଏ,
ଯେ ସାହସୀ ତା'ର ଭୟ ନ ଥାଏ ।
ଯେ ଉତ୍ତମ ମଣିଷ ସେ ବୁଝେ କ'ଣ କରିବା ଉଚିତ,
ଯେ ଅଧମ ମଣିଷ ସେ ବୁଝେ କ'ଣ କଲେ ଲାଭ ।
ଉତ୍ତମ ମଣିଷ ଅନ୍ୟମାନଙ୍କ ମତ ପ୍ରତି ଉଦାର ସହନଶୀଳତା ଦେଖାଏ

କିନ୍ତୁ ସେମାନଙ୍କ ମତ ସହିତ ସର୍ବତୋଭାବେ
ଏକମତ ହୁଏ ନାହିଁ,
ଯେ ଅଧମ ମଣିଷ ସେ ଅନ୍ୟମାନଙ୍କ ମତ ସହିତ
ସର୍ବତୋଭାବେ ଏକମତ ହୁଏ

କିନ୍ତୁ ତାଙ୍କ ମତ ପ୍ରତି ଉଦାର ସହନଶୀଳତା ଦେଖାଏ ନାହିଁ
ଉତ୍ତମ ମଣିଷ ହୁଏ ଶାନ୍ତ ଆଉ ଦମ୍ଭ
କିନ୍ତୁ ସେ କଳଗୋଳ କରେନାହିଁ,
ସମସ୍ତିଙ୍କ ସଙ୍ଗେ ସହଜରେ ମିଶେ
ସେ କରେନାହିଁ ସ୍ନେହ ମେଣ୍ଟ

ଯେ ସୁଦ୍ଧେ ଜୀବନ ବଞ୍ଚିବାକୁ
ଉତ୍ତମ ମଣିଷର ନୀତି ଆଶ୍ରା କରି
ତାହାରର ପ୍ରଲୋଭନ ଏଡ଼ି
ଯେ ତାହାଠୁଁ ଦଣ୍ଡ ଭୟକୁ ଡରେ ନାହିଁ
ଉତ୍ତମ ମଣିଷର ନୀତିର ଯାହା ବିରୋଧୀ ତାକୁ ଘୃଣା କରେ

ତା' ଦୃଷ୍ଟିରେ
ସମଗ୍ର ମାନବ ଜାତି ବିଶେ
ଅବିକଳ ଜଣେ ମନୁଷ୍ୟ ପରି
ତେଣୁ ଉତ୍ତମ ମଣିଷ
ଯେତେବେଳେ ସାମାଜିକ ନୀତି ଆଚରଣ
କରେ ଆଲୋଚନା
ସେ ନିଜକୁ ହିଁ କରେ ମାଧ୍ୟମ କି କଷଟି
ତା'ପରେ ବ୍ୟବସ୍ଥା ବାନ୍ଧେ
ସାଧାରଣ ଲୋକ ପାଇଁ ।"

୪୧

ଆଜିଠାରୁ
ଅଢ଼େଇ ହଜାର ବର୍ଷ ତଳେ

ଏଇ ପୃଥିବୀରେ ଥିଲେ
କନ୍‌ଫୁଚିଅସ୍ ,
ଚୀନ୍-ସୁଧୀ,
ମାନବ ଜାତିର ଏକ ପଥ ପ୍ରଦର୍ଶକ
ସେ ଦେଖାଉଥିଲେ ପୁରୁଷୋତ୍ତମର ମାର୍ଗ ଜ୍ଞାନ ଆଉ ହିତାହିତ
ବିବେଚନାପୂର୍ଣ୍ଣ
ସୌଜନ୍ୟ ଓ ମୈତ୍ରୀମୟ
ସୁଶୃଙ୍ଖଳ ସଂଯମରେ ନିୟନ୍ତ୍ରିତ ।

ପଛେ ବୌଦ୍ଧମାର୍ଗ ଜଗତ ବନ୍ଦିତ
ପ୍ରଚାରିଲା ଶାନ୍ତି ଓ କରୁଣା ମୈତ୍ରୀ ଓ ସୁନୀତିର ମନ୍ତ୍ର,
ତା'ପରେ ତ ଏବେ
ମାଓସେତୁଂ ଦର୍ଶନ, କଲା ତାକୁ ଏକା ଶ୍ରେଷ୍ଠ ଗୁରୁ,
ଏ ଦର୍ଶନ ଲୋଡ଼େ ଗଢ଼ିବାକୁ ନିଜ ଦେଶେ
ରଣ ଡଂକା ସାମ୍ରାଜ୍ୟ ଲୋଲୁପ
ଆକ୍ରମଣକାରୀ ଥାଟ
ଶାନ୍ତିର ନାଁ କହି ସେ ଜାଳିବେ ନିଆଁ
ପୋଡ଼ୁ ପଛେ ଏ ଦୁନିଆଁ ମରନ୍ତୁ ସେ ଯେତେ
ଉଠୁ ଯେତେ ଆର୍ତ୍ତ ହାହାକାର

ଅଶ୍ରୁର ସମୁଦ୍ର
ବହୁ ଯେତେ ରକ୍ତ ନଦୀ
ନଛୁଡ଼ିବେ ନିଜ ଜିଦ୍ଧ ଲଗିଥିବେ ଲୁଆଡ଼େ
ସେହି ତାଙ୍କ ଦୁର୍ଯ୍ୟୋଧନ-ମାନ
ଭସ୍ମାସୁର ନିଜଠାଣ

ସତେ ଅବା ପୁରାତନ ଚୀନ୍‌ର ସନ୍ତାନଗଣେ ଖାଇଛନ୍ତି ଡ୍ରାଗନ୍
ଏ ଯେତେ ମାରଣାବେଶୀ ପର ଦେଶେ ପଶି
ପର ସଙ୍ଗେ ଝୁରି ଲଗି
କଜିଆ କରିବା ପାଇଁ ଖୋଜୁଥାନ୍ତି ଆଜି

ସ୍ମୃତି ଥାନ୍ତି ରକ୍ତ ଆଉ ମିଛ ଇସ୍ତାହାର
ବଞ୍ଚନ୍ତି ଧମକ ଆଉ ଭ୍ରୁକୁଟି
ଲଗାନ୍ତି ଜଣକୁ ଜଣେ ପାଣ୍ଡୁଥାନ୍ତି ଜାଲ
ଭୁଲାଇ ଫୁସୁଲାଇ କୋବଲାଇ ଝଡାଇ
ଚଳାନ୍ତି ପରକୁ ହୀନବୁଦ୍ଧି ମନ୍ଦବୁଦ୍ଧି ଦେଶିକା ଶାସକ ।

ଯେପରି ଏ ପାକସ୍ଥାନେ, ଯେ ଲାଗିଲେ ଭାରତ ସଙ୍ଗରେ
ଭାରତର ପ୍ରତିଆକ୍ରମଣେ ଧ୍ୱଂସ ହେବ ତନ୍ତି
ଆମେରିକା ଗଢ଼ିଥିବା ରଣଘାଟିମାନ, ଯାହା ଚୀନାର ଦକା,
ଧ୍ୱଂସ ହେବ ପାକସ୍ଥାନ୍ ହାତେ ଆମେରିକା ଦେଇଥିବା
ଅସ୍ତ୍ରଶସ୍ତ୍ର ସେଇ ଯାହା ଚୀନାକୁ ଆଗୁଳ
ଧ୍ୱଂସ ହେବ ପାକସ୍ଥାନ ବଳ
ନ ହୋଇ ପାରିବ ଆଉ କେବେ ଚୀନ୍ ବନ୍ଧୁଛରେ ଭବିଷ୍ୟତେ
ରଣ ଘାଟି
ହେବ ଦେବାଳିଆ ଚୀନ୍ ପାଖେ ଚିରକାଳ ମୁଠି ଭିକ୍ଷୁ,
ଭାରତ ବି, ଯୁଦ୍ଧ ଅବା ପ୍ରତିରକ୍ଷା କାର୍ଯ୍ୟେ କରି
ଅକଳନ ବ୍ୟୟ
ନ ପାଇବ ବେଳ ବା ସମ୍ବଳ
କରିବାକୁ ତା ସମୃଦ୍ଧି ଯୋଜନା ସଫଳ ଏଡ଼େ ବେଗି,
ଯେତିକ କରୁଛି ଏତେକାଳ ନାନା ପ୍ରତିକୂଳ ଅବସ୍ଥା ବି ଥାଇ
ଜ୍ୱଳନ୍ତି ଅନ୍ୟଦେଶ ପାରିଥିଲ ସାଧି,

ସତେ ଅବା ଏଇମାନେ
ନୂତନ ପୁରୁଣା ଚୀନା ହଜାର ହଜାର ବର୍ଷର
ଶିକ୍ଷିତ ସୁସଭ୍ୟ ମଣିଷ
ରକ୍ତମାଂସ ମଣିଷ ବା ଆଦୌ
ସେମାନେ ଡ୍ରାଗନ୍ ଜନ୍ତୁ ଛୁଆ
ନାହିଁ ସେଠି ଭଲେ ହେଲେ ମଣିଷପଣିଆ,

ସେମାନେ ଦେଖନ୍ତି ସ୍ୱପ୍ନ
ନିଆଁ ଆଉ ଧୂଆଁ
ଏ ପୃଥିବୀ ଧ୍ୱଂସ ହେବ
କି ସୁନ୍ଦର କି ଚମତ୍କାର !

ଚାରିଆଡ଼େ ରକ୍ତ ନଦୀ ରକ୍ତର ଦରିଆ
କି ସୁନ୍ଦର କି ଚମତ୍କାର !
ଚାରିଆଡ଼େ ପଡ଼ିଥିବେ ସଢ଼ୁଥିବେ ମଢ଼ !
ବିଲୁଆ କି ଶାଗୁଣା ବି ମୃତ !
କି ସୁନ୍ଦର କି ଚମତ୍କାର !

ଖାଲଥିବେ ମାଓ ସେ ତୁଂ
ଗାଉଥିବେ ଗୀତ
ପୁଣି ପୁଣି ବନ୍ଧୁକ ବ୍ୟାରେଲ୍ ବାଟେ
ସେଇ ବନ୍ଧୁକ ଭିତରୁ ତ ! ସଭ୍ୟତାର ଜନ୍ମ !

କେତେକାଳର କି ବଣକଟିଆ
ହମାନ୍ୱସ୍ତୁ ବାରମ୍ବାର ନାନା ଦୁର୍ବିପାକେ
କେତେ ଯୁଗ ଧରି
କେଉଁ ପାହାଡ଼ରେ ପଥରରେ ବନ୍ଧା କେଉଁ ପ୍ରମିଥିଉସ୍‌ର ଛାତିରୁ
ଜୀଅନ୍ତାରେ କେତେ ଯେ ଶାଗୁଣା
କେଣ୍ଟା କେଣ୍ଟା କରି ମାଂସଖାଇ
ଟିକିଟିକି କରି ଡିଳଡିଳ କରି ଯନ୍ତ୍ରଣାର ଚଆଁ ଦେଇ
ପୂରାଇ ଅଫିମ, ଦେଇ ଲଗାତର ବୋମାମାଡ଼,
କରି ନିଃସମ୍ବଳ ଗୃହହୀନ, ବାରମ୍ବାର
ଦେଇ ଅପମାନ ଜୀଅନ୍ତା ମରଣ
ଶେଷରେ ସେ ମରିଗଲା,
ତାର ମୃତପିଣ୍ଡ

ହେଲା ଗୋଟେ ଅବୋଧ ଡ୍ରାଗନ୍ ପଶୁ
ତା ଶ୍ୱାସରେ ସବୁ ଦଳିଯାଏ ଜଳ ଜଳ, ସେ ଏକ ଟ୍ରାଜେଡ଼ି

କିନ୍ତୁ ସେହି ହିଂସ୍ର ଓ ଡରକା ପଶୁ
ଯେ ପଛଆଡ଼ୁ ମାଡ଼ିଆସେ
ଫୁଳାଏ କାମୁଡ଼ି ଧରି ପୁଣି ପଳାଏ ପୁଣି ଛକି ଛକି ଆସେ,
ଯେ ବୁଝେ ନାହିଁ ଶାନ୍ତିଡାକ,
ତାର ଏ ଅଧଃପତନ
ମାନବ ଜାତିର ଏକ ଅବ୍‌ଶୋଷ୍‌ର କାରଣ ସତ
କିନ୍ତୁ ତାର ଏ ରୂପ ମୂରତି
ନୁହେଁ ବିଶ୍ୱାସର ଭୂମି,
ତା ପଂଖା ଆଉ ନଖ ନୁହେଁ ହାତେ ହାତେ ମିଳାଇବା ପାଇଁ
ତାର ତୀକ୍ଷ୍ଣଦାନ୍ତମୟ ଲହ ଲହ ଜିଭ ଥାଇ ଫେଣ ଫେଣ
ଲାଳସ୍ରାବ ପାଟି
ନୁହେଁ ମଣିଷର ବୋକ ନେବା ପାଇଁ

ସେ ଯାଇତ—
ସେ ସରିତ, ମଣିଷପଣରୁ—
ଯଦି କେବେ ତାଠିଁ
ଡ୍ରାଗନ୍ ମରେ
କେଉଁ ମଣିଷର ଗୁଳି ବ୍ଲେଟେ
ସଙ୍ଗେ ତାର ଯୁଦ୍ଧଖୋର୍ ଆତତାୟୀ କୁଳ,
ତା'ପରେ ସେଠି
କିଏ ସନ୍ଥ ସିଞ୍ଚେ ମନ୍ତ୍ରପୂତ ବାରି,
ହୁଏତ ଚୀନ୍‌ରେ ପୁଣି ଜନ୍ମହେବ ନୂଆ ଦିନ,
ପୁଣି ଉଠିବେ କନ୍‌ଫୁସିଅସ, ବୋଧିସତ୍ତ୍ୱ
ପୁଣି ସେଠି ଠିଆହେବ ହସ ହସ ମଣିଷ କେତେ
ପୁଣି କେତେ ସୁନ୍-ୟାତ୍-ସେନ୍

ଯେହେତୁ ଡେଉର ଅଛୁ,
ଆଜ ନୁହେଁ,
ଆଜ ଯେଠି ମନ୍ତ୍ରଷାସୁରର ନାନ୍ତ ଡ୍ରାଗନାସୁର,
ସମ୍ମୁଖରେ ହୋଇଛି,
ଡ୍ରାଗନ ଠିଆ,
ଆଉ ଟେଲିସ୍କୋପ୍‌ରେ ଦେଖିବାର ବେଳ ନାହିଁ,
ମଣିଷ ଜାତି ତା'ର କର୍ତ୍ତବ୍ୟ କରବ,
ଚଞ୍ଚଳ ।

୪୨

ମାଓ ସେତୁଂ କରନ୍ତି ରଚନା,
ମାଓବାଦର ସଂହିତା, ସଙ୍ଗୀତରେ
ସାଂ-କେଃ-ଚଆ ଲେଖନ୍ତି ତା ଭାଷ୍ୟ
ଆଉ ସେତେ ମାଓଇ ଲେଖକ କବି

"କହନାଇଁ ଅଛୁ ଝାଣୁଆ ଘାଟିରେ ଦମ୍ଭ ଲୁହାର ଆଗୁନ
ଏକା ପାହୁଣ୍ଡରେ ଆଜ ଆମେ ମାରବୁ ଡ଼ିଆଁ ସତେ !
ତା ଶିଖକୁ ବୋଲ
ସେଠି ପାହାଡ଼ଗୁଡ଼ାକ ସମୁଦ୍ର ପରି
ତରଳ ଆଉ ନେଳ
ସେଠି ମର ମର ସୂର୍ଯ୍ୟ ବଦଶେ
ରକ୍ତ ପରି ନାଲ ।"

ଗାଏ ସେ ମରଣ କବି
"ହେ ପର୍ବତଗଣ,
ଆହୁରି ଜୋର୍‌ରେ ଆହୁରି ତରତର କରି
ମାରେଁ ମୁଁ ମୋ ଛୁଟିଲା ଘୋଡ଼ାକୁ ଘୁଟ
ବସିଥାଏଁ ଗାଦମାଡ଼ି ଝାଣ କରି
ନ ଛାଡ଼ଇ ଜନ୍
( କମ୍ପି ନାହିଁ ଘୋଡ଼ାଙ୍ଗ )

ବେକଗଣ୍ଡି ବୁଝିଲେ ମୁଁ ଚମକ ପଡ଼େ
କେତେ ଉଞ୍ଚରେ ମୁଁ
ମୋ ମୁଣ୍ଡ ଉପରେ
ଆକାଶ ମୋଟେ ଡେଢ଼ଫୁଟ ଛଅ ଇଞ୍ଚ ଛଡ଼ା
ସରଗ ଦ' ଆଙ୍ଗୁଳ"

ବେଶି ଦିନ ହୋଇନାହିଁ
ଥିଲେ ଜଣେ ତାଙ୍କ ନାଁ ହିଟ୍‌ଲର୍
ସେ ବି ଏପରି ସ୍ୱପ୍ନ ଦେଖୁଥିଲେ
ଚଢ଼ି ଗୋଟେ କାଠ ଘୋଡ଼ା
ଠିଆହୋଇ ଉଞ୍ଚ ମଞ୍ଚା ପରେ
ଦେଖୁଥିଲେ ଅସମ୍ଭବ ନୁହଇ ତ କିଛି

ଆଜି ତା ଆଗୁଁ
ଥିଲେ ଆଉ ଜଣେ, ନେପୋଲିଅନ୍
କହୁଥିଲେ 'ଅସମ୍ଭବ' ବୋଲି ଏକ ଶବ୍ଦ
ମିଳେ ଖାଲି ମୂର୍ଖଙ୍କ ଅଭିଧାନରେ,
ଆଜି କାହିଁ ତାର ସତ୍ତା ନାହିଁ

ସେହିପରି ଆଜି ଜଣେ ମାଓ
ଭାବୁଛନ୍ତି ସମ୍ଭବାମି ଯୁଗେ ଯୁଗେ
ଆଜି ଅଚିରରେ ସବୁ ଦେଶ ହେବ ତାଙ୍କ କରଗତ
ଜିଗୀଷା ପାଗଳ ଯେତେକ ଯେତେ ଯୁଦ୍ଧଖୋର
ଯାହାଙ୍କ ଆଖିରେ ମଣିଷ ଜୀବନ ପୋକମାଛିଠାରୁ ହୀନ
ଆପଣା ପକ୍ଷର ସୈନ୍ୟ ଯଦି ଯୁଦ୍ଧେ ହୋଇବ ଆହତ
ସେ ତା'ର ଜଞ୍ଜାଳ ତୁଟାଏ ତାକୁ ମାରି ବେଅନେଟ୍ କେଞ୍ଚା
ଆଗେଇବା ପାଇଁ ସେ କରେ ସ୍ୱପକ୍ଷ ମରାଇ
ମୁର୍ଦ୍ଦାରରେ ମୁର୍ଦ୍ଦାରରେ ସେତୁ
ହତ୍ୟା ଯାହାର ଖେଳ ଓ ଖିଆଲ୍
"ସର୍ବଦା କହିବ ମିଥ୍ୟା" ଏଇ ଯାର ମନ୍ତ୍ର

ମୂଳୋତ୍ପାଁ ସେ ନିଜ ଚେତନାରେ
ମାନବଜୀବନ ସୁଖ ଦୁଃଖ ପ୍ରତ୍ୟାଖ୍ୟାନ କରେ
ତାହା ସଙ୍ଗେ ଇତରଜୀବନର ସୀମା ସରହଦ୍
ଆପଣା ପ୍ରତ୍ୟୟ ସୃଷ୍ଟି କରେ
ସବୁ ସମ୍ଭବ
ସବୁ କରିଦେବ

ସେ ଖାଲି ଗୋଟାଏ ବୋମା, ମଣିଷ ତ ନୁହେଁ,
ଫୁଟି ଯାଇ କରି ଯାଇ ସଂସାରର କିଛୁ କ୍ଷୟକ୍ଷତି
ସେ ହୁଏ ଅଙ୍ଗାର,
ଜାକର, ନିଷ୍ଫଳ
ସବୁଦିନ ପାଇଁ ମଳି ।

## ୪୩

ଶାନ୍ତ ନିର୍ବିବାଦ ଓ ଶାନ୍ତିର ପୂଜକ
ଭାରତ ଉପରେ ଲଦା ହେଲା
ଯୁଦ୍ଧ
ରଖିବାକୁ ଏ ଦେଶର ସ୍ୱାଧୀନତା ଅକ୍ଷୁଣ୍ଣ ଓ ପୂର୍ଣ୍ଣ
ରକ୍ଷା କରିବାକୁ ଏ ଦେଶର ମଣିଷଙ୍କ
ଜୀବନ ଓ ଧନ
ମର୍ଯ୍ୟାଦା
ଭାବର ଓ ଚଳଣି
ବର୍ତ୍ତମାନ ଓ ଭବିଷ୍ୟତ୍ ।

ଭାରତ ତ ଯୁଦ୍ଧକୁ ଘୃଣା କରେ,
ଏ ଯୁଦ୍ଧରେ
ନାନା କ୍ଷତି ଜଣ ଅର୍ଜି ଜଗତର ବିସ୍ମୟ ଓ ସମ୍ମାନ ଜନ୍ମାଇ
ତଥାପି ସେ ନୁହେଁ ରଣରଙ୍ଗା ହନନ ପାଗଳ ମଦୋନ୍ମତ୍ତ,

ତଥାପି ସେ ହୃଦୟ ସହିତ ଯୁଦ୍ଧକୁ ଘୃଣା  କରେ, ଖୋଜେ ଶାନ୍ତି
ଏ ଭୂଖଣ୍ଡେ ଆଉ ସାରା ଜଗତରେ
ଖାଲି ଆଜ ପାଇଁ ନୁହେଁ, ଚିରକାଳ ପାଇଁ,
ସମଗ୍ର ମାନବଜାତି ପାଇଁ,
ତଥାପି ତତ୍ପର, ସହିଷ୍ଣୁ  ଭାବରେ ଆଗୁସାର,
ଗଢ଼ିବାକୁ ଶାନ୍ତିର ଦେଉଳ, ଜାଳିରଖିବାକୁ ଶାନ୍ତିର  ଅଖଣ୍ଡ ଦୀପ

କିନ୍ତୁ ତା' ବୋଲି
ଭାରତ ଚାହେଁନା ଶାନ୍ତି କିଣିବାକୁ
ଆପଣା ମର୍ଯ୍ୟାଦା ଅବା ଦେଶର
ଭୂଖଣ୍ଡ ମୂଲେ ଜାଗା ବଦଳରେ,
ତା'ର ଅହିଂସା ମାତ୍ର ନୁହେ ଦୁର୍ବଳର  ସବଳଠୁ ଭୀତିଯୋଗୁଁ
ତା'ର ଶାନ୍ତି ଡାକ ନୁହେଁ
ଉଦ୍ଧତର ଅନ୍ୟାୟକୁ ସହି ବଞ୍ଚିବାର  ଗୋଟାଏ ଉପାୟ,
ତା' ପ୍ରତି,
ଏତେ ଟିକିଏ ଅନ୍ୟାୟ ହେଲେ ସେ ତା'ର ପ୍ରତିରୋଧ ଅବଶ୍ୟ କରିବ,
ଯେ ଉଠାଇବ ଅସ୍ତ୍ର, ମାନିବ ନାହିଁ ଯୁକ୍ତିର ମାର୍ଗ
ତା' ବିରୁଦ୍ଧରେ ଭାରତ ବି ଧରିବ ଅସ୍ତ୍ର
ଯେ ଚାହେଁ ପରଖି ଦେଖୁ
ଯେତେଥର ମନ ।

ପ୍ରତିରକ୍ଷା ଲାଗି ଯାହା  ଲୋଡ଼ା  ହେବ,
ହେଉ ପଛେ ଛୁଆ ଯୁବା ବୁଢ଼ା ପୁରୁଷ ଓ ସ୍ତ୍ରୀ ମିଶି
ସତସ୍ନକଣ କୋଟି ମନୁଷ୍ୟଙ୍କ
ଜୀବନର ବଳିଦାନ
ଯୁଦ୍ଧ ଯଜ୍ଞକୁଣ୍ଡେ
ତା ବି ଦେଖାଇବାକୁ ଏ ଦେଶ ପ୍ରସ୍ତୁତ,
ସବୁ ଭୂଖଣ୍ଡେ ଏକା କଥା
ଯେ କହୁଁ  ଯେଉଁ ଭାଷା,
ଆଗେ ଦେଶମାତା ଜାନ୍ ପଛେ ଆମ ଜାନ୍ ।

## ୪୪

ଏକା ସ୍ୱରେ ଏକା ତାଳେ ଏକା ଛନ୍ଦେ
କାହିଁର ସଙ୍ଗୀତ ଖେଳେ ଅନ୍ତରେ ଅନ୍ତରେ ବିଶାଳ ଏ ଦେଶବ୍ୟାପୀ
ମୁହୂର୍ତ୍ତକେ ଏକ ହୁଏ ଏ ମହାଜାତି,
ଯାଏ ଏ ଦେଶ ଭିତରେ
ସବୁ ଅଳି କଳି ଓରମାଣ ଭୁଟି
ବୃଦ୍ଧ ସନ୍ତ୍ ଫତେ ସିଂ, ପଞ୍ଜାବୀ ସୁବା, ଆନ୍ଦୋଳନେ
କରୁଥିଲେ ଅନଶନ
କଲେ ତାଙ୍କ ଦାବି ପ୍ରତ୍ୟାହାର, କହିଲେ ସେ ଡାକ
ଯାଅ ପିଲେ ଆଗ ଆମ ଦେଶ ପାଇଁ ଲଢ଼,
ପ୍ରତି ପରିବାରୁ ଯାଅ ଭିରି ଅନ୍ତତଃ ଜଣେ
ଜନନୀ ବିପନ୍ନା ଆଜ, ଘର କଥା ପରେ ବୁଝା ହେବ,
ବନ୍ଦ ହେଉ ଯେତେ ସବୁ ମନ ଫଟାଫଟି ତର୍କ, ଆନ୍ଦୋଳନ,
ଆଗ ଦେଶ, ଆମ ପ୍ରିୟ ଦେଶ
ହେଇ ଦେଖ ଶତ୍ରୁ ପଶେ, ଧାଅଁ ତାକୁ କରରେ ନିପାତ ।

ଠିଆହୁଏ ଭାରତୀୟ ସେନା,
ତା' ପିଠି ଆଡ଼େ
ଏକ ହୋଇ ଠିଆହୁଏ ଭାରତ ଜନତା
ଦେଶ ପାଇଁ ସବୁ ତ୍ୟାଗ ସବୁ ବଳି ଦେବା ପାଇଁ
ସେ ପ୍ରସ୍ତୁତ ।

## ୪୫

ସେନା ଆଜ ଦେଶ ଏକ,
ଏକା ଗଛ
ପାତାଳରେ ତା' ଚେର, ଆକାଶରେ ତା' ମୁଣ୍ଡ
ସେନା ସେ ଗଛର ଫୁଲ, ଅମଳାନ, ସୁଶୋଭିତ
ଏ ଦେଶର ଶ୍ରେଷ୍ଠତମ,

ନୁହେଁ ବାକ୍ୟବାଣ ଅବା କାଗଜର ଫୁଲ,
ନୁହେଁ ଖାଲି ନିଷ୍କ୍ରିୟ ସଦିଚ୍ଛା, କିନ୍ତୁ ସୁବାସିତ ଧୂଆଁ
ଦେବଭୂମି ଏ ଭାରତବର୍ଷ
କେତେ କଳ୍ପକଳ୍ପାନ୍ତର ତପ କରି
ପାଇଥିଲା ଏନ୍ତ ଦେଶ ଧରଣୀ ସୁନ୍ଦରୀ
ସେ ଦେଶରେ ଜନମିଲେ ଦେବଗଣ
ଧରଣୀର ମୁକ୍ତି ପାଇଁ
ଯୁଗେ ଯୁଗେ
ଜନମିଲେ ଶ୍ରୀ ପରମେଶ୍ୱର ବାରମ୍ବାର ନାନା ଭାବେ ନାନା ଯୁଗେ
ସତ୍ୟର ପ୍ରତିଷ୍ଠା ପାଇଁ ଅସତ୍ୟ ବିନାଶି

ଶ୍ରୀ ଭଗବାନୁବାଚ—
"ବହୂନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜୁନ
ତାନ୍ୟହଂ ବେଦ ସର୍ବାଣି ନତ୍ୱଂ ବେତ୍ଥ ପରଂତପ
ଅଜୋଽପି ସନ୍ନବ୍ୟୟାତ୍ମା ଭୂତାନାମ୍ ଈଶ୍ୱରୋଽପିସନ୍
ପ୍ରକୃତିଂ ସ୍ୱାମ୍ ଅଧିଷ୍ଠାୟ ସଂଭବାମ୍ୟାତ୍ମମାୟୟା ।
ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍‌ଥାନମ୍ ଅଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମ ସଂସ୍ଥାପନାର୍ଥାୟ ସଂଭବାମି ଯୁଗେ ଯୁଗେ"

ସେ ପୁଣ୍ୟ ଭାରତ ଦେଶେ
ସବୁ ଧର୍ମ ସବୁ ଭାଷା ସକଳ ମନୁଷ୍ୟ
ମିଶି ଏକ ମହାବୃକ୍ଷ
ସେ ବୃକ୍ଷର ଶ୍ରେଷ୍ଠତମ ପ୍ରିୟତମ ପୁଷ୍ପେ
ସେ ବୀର ବାନ୍ଧବଗଣ ଧନୁର୍ଦ୍ଧାରୀ ସତ୍ୟସନ୍ଧ
ସେମାନେ ତା' ପୃଷ୍ଠ
ଯେତେବେଳେ ଯୁଦ୍ଧେଁ

ସବୁ ପୁଷ୍ପ ଅଛି ନିଜ ସ୍ଥାନେ, ପ୍ରତି ଢେଙ୍ଗେ ପୂର୍ଣ୍ଣ,
ନାହିଁ କିଛି ଖାଲି
ଯଦି କେହି ପଡ଼େ ଖସି,
ସେ ହୁଏ ଆକାଶର ତାରା,
ତା’ ସ୍ଥାନ ଆଖି ପିଛୁଡ଼ାକେ ପୂର୍ଣ୍ଣ କରେ ଆଉ ଏକ ଫୁଲ
ଶହ ଆଡ଼େ ରହି ମୁହାଁମୁହିଁ
ଠିଆହୁଏ ଯୁଗାବର୍ତ୍ତ କାଳରୂପୀ

"ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍
ବିଶ୍ୱମୂର୍ତ୍ତି ର୍ମହାମୂର୍ତ୍ତି ର୍ଦୀପ୍ତମୂର୍ତ୍ତି ରମୂର୍ତ୍ତିମାନ୍
ଅନେକ ମୂର୍ତ୍ତି ରବ୍ୟକ୍ତଃ ଶତମୂର୍ତ୍ତି ଶତାନନଃ
ସହସ୍ରାର୍ଚ୍ଚିଃ ସପ୍ତଜିହ୍ୱଃ ସପ୍ତୈଧାଃ ସପ୍ତବାହନଃ
ଅମୂର୍ତ୍ତିରନଘୋଽଚିନ୍ତ୍ୟୋ ଭୟକୃଦ୍ ଭୟନାଶନଃ ।"

୪୭

ହାଜିପୀର୍ ସାହେବ୍ କେଉଁ ଅଞ୍ଚଳର ଜଣେ
ସନ୍ଥ ।
ସାଢ଼େ ଆଠ ହଜାର ଫୁଟ ଉଚ୍ଚ ପାହାଡ଼ ଘାଟିରେ—
ଯେଉଁଠିକୁ ଦୁଇ କଡ଼ୁ ଚଢ଼େ ଅତି ତିଖ ସରୁ ଚଲା ବାଟ
ମୁଣ୍ଡ ଘୁରି ଝୋଲ କରେ କରେ
ଚଢ଼ୁ ଚଢ଼ୁ ସତେ ଅବା ଛାତି ଫାଟିଯାଏ
ଜଙ୍ଘ ଆଉ ଗୋଡ଼ ପେଣ୍ଡା ସତେ ଛିଣ୍ଡି ପଡ଼େ
ସେହି ନିର୍ଜନ ସ୍ଥାନରେ
ପାନ୍ଥଜନ-ସେବା ପାଇଁ
ହାଜିପୀର୍ ସାହେବ୍ ବସାଇଥିଲେ ଆଶ୍ରମ
ମନୁଷ୍ୟ କଲ୍ୟାଣ ଲଗି ରହିଥିଲେ ସେଠି
ପାଉଥିଲେ ନିତି ସେ ଦର୍ଶନ
କ୍ଳାନ୍ତଶ୍ରାନ୍ତ ନରରୂପ୍ୟ ଆଲ୍ଲାଙ୍କର ।

ସେ ହୋଇଲେ ପୁଣ୍ୟ ଆଉ ଧନ୍ୟ
ଇହଜନ୍ମ ସାର ସମାଧି ଲଭିଲେ ସେଠି
ରହିଲା ସେ ପୁଣ୍ୟ ପୀଠ ସନ୍ଥ ନାମ ଘେନି
ସେହି ନାମେ ଅଭିହିତ ହେଲା ଘାଟି
ଆଜି ସେ ଅଭୁଲ
କାଶ୍ମୀରରେ ହାଜପୀର୍ ଘାଟି ।

ପାକସ୍ଥାନ ଧୂଳିସାତ୍ କଲା
ସେ ପବିତ୍ର ହାଜପୀର୍ ଆଶ୍ରମ ଓ ଦର୍ଗା
ବୋମାମାଡ଼େ ଆଉ ଗୁଳିମାଡ଼େ,
ଭାରତର ଯୁଦ୍ଧ ଜୟ ପରେ
ଯେତେବେଳେ ହାଜପୀର୍ ଘାଟି ହେଲା ହସ୍ତଗତ
ପୁଣି ତୋଳା ହେଲା ନୂଆ ହୋଇ ସେଠି ସନ୍ଥପୀଠ ।

ସେ ତ ପଛେ,
ତା ଆଗରୁ ଯେଉଁବାଟେ କାଶ୍ମୀରକୁ ପଶିଲେ ସେ ପାକସ୍ଥାନୀ ସୈନ୍ୟ
ଛଦ୍ମବେଶୀ ସତେ ବା ବେପାରୀ
ଅବା ଖାଲି ଯାତ୍ରୀ, ସଂଖ୍ୟା ନଅଶହ,
ତାଂମାର୍ଗ ଗାଁ'ଠାରୁ ପାଞ୍ଚକୋଶ ଦୂରେ ଧାନ୍‌ଓ୍ୱାସ୍ ବଣ ପାଖେ
ମାଇଲିଏ ଯାକେ ହୋଇ ସେ ଖେଳାଇ
ଖାନା ରାନ୍ଧୁଥିଲେ ବସି,
ସେଦିନ ତାରିଖ ଆଠ ମାସ ଅଗଷ୍ଟ, ସାଲ ଉଣେଇଶ ପଁଷଠି
ମହମ୍ମଦ ଦିନ୍, କାଶ୍ମୀରୀ ଗୁଜ୍ଜର୍ ଜାତି
ଛାଡ଼ିଥିଲା ଗୋରୁ ମେଣ୍ଢା ଚରିବାକୁ ସେ ବଣରେ
ଜଗିଥିଲା ପାଖେ,
ଆଗ ସେ ଦେଖିଲା,

ଆସିଲେ ଦ'ଜଣ ମାତ୍ର, ବାଟଘାଟ ପଚ୍ଚରିଲେ,
ଗୁଲ୍‌ମାର୍ଗ କୁଆଡ଼େ ? କେଉଁଠାରେ ଅଛି
ଭାରତୀୟ ସୈନ୍ୟଙ୍କର ରସଦ ଭଣ୍ଡାର ଆଉ ଶସ୍ତ୍ରାଗାର ?
ବାଟ ଦେଖାଇଲେ ମିଳିବ ସ୍ବରଣ' ଟଙ୍କା,
ସିଗାରେଟ୍ ଆଣିବ କିଣି ? ଏଇ ଦଶଟଙ୍କା ନିଅ ।

ଧାଏଁ ମହମ୍ମଦ୍ ଖାନ୍, ଘର୍ଦ୍ଧଶ୍ବାସେ, ତାଂମାର୍ଗ୍ ମୁହାଁ,
ନିଶ୍ଚୟ ସେ ଗୋଳମାଳକାରୀ, ପାକିସ୍ତାନୀ ହମ୍‌ଲାଦାରୁ
ସେ ଆଗ ଦେଖିଛି, ଯାହା ଆଉ କେହି ଦେଖିନାହିଁ
ସେ ଆଗ ଜାଣିଛି, ଯାହା ଆଉ କେହି ଜାଣିନାହିଁ,
ଗ୍ରାମବାସୀ ତ ଶୋଇଛନ୍ତି !

ଗର୍ବ ଓ ଆନନ୍ଦରେ ତା'ର ଅନ୍ତର ଯାଉଛି ପୂରି,
ତାକୁ ଦୂତ କରି
ପଠାଇଛି ଆଜି ଆଲ୍ଲା
ତା ଦେଶବାସୀଙ୍କୁ କରିବାକୁ ସାବଧାନ,
ସେ ବି ତ ସଚେତକ
ଏକ ମେଷପାଳକ ତାହାପରି
ତା ହୃଦୟ ଗଦ୍‌ଗଦ ହୁଏ ଗାଏ ପବିତ୍ର କୁରାନ୍

"ଐ ଲିହାଫ୍ ଓଢ଼୍ ନେୱାଲେ
ଉଠ୍ ଔର୍ ଲୋଗୋଁକୋ ହୁଶିୟାର୍ କର୍
ବହୁତ୍ ମେହେର୍‌ୱାନ୍ ନିହାୟତ୍ ରହମ୍‌ୱାଲା
ଜଜା କେ ଦିନ୍ କା ମାଲିକ ହୈ
ଐ ଖୁଦା, ତେରୀ ହୀ ହମ୍ ଇବାଦତ୍ କରତେ ହୈଁ
ଔର୍ ତୁଝ୍ ହୀ ସେ ମଦଦ୍ ମାଂଗ୍‌ତେ ହୈଁ
ହମକୋ ସିଧା ରାସ୍ତା ଦିଖା"

ଦେଢ଼ ଘଣ୍ଟା ହୋଇନାହିଁ
ସରିଛି ତା ବାଟ ପାଞ୍ଚକୋଶ

ଏଇ ତାଂମାର୍ଗ ଗ୍ରାମ
ଆଜ ଏଇ ଶାନ୍ତ ରକ୍ଷାକାରୀ ତା ଦେଶ ପୁଲସ୍ ଫାଣ୍ଡି
ମହମ୍ମଦ୍ ଖାନ୍ ବଢ଼ାଏ ସେ କଳଙ୍କିତ ଦଣ୍ଡଙ୍କିଆ ନୋଟ୍
କହେ ତା କାହାଣୀ କନ୍‌ଷ୍ଟେବଲ୍ ଅବଦୁଲ ଖାଲିକା ଆଗେ,
ଦେଖାଏ ସେ ବାଟ ଦେଖାଏ ସେ ଦୁହୁଁ ଶତ୍ରୁର ଗୁଞ୍ଜଣୀ
ମୁହୂର୍ତ୍ତକେ ଖେଳଯାଏ ବାର୍ତ୍ତା ତାର ଆଉ ବେତାରରେ
ଜାଣେ କାଶ୍ମୀର୍ ଜାମ୍ମୁବାସୀ, ଜାଣଇ ଭାରତ
ଶ୍ରୀ ନଗର ଦିଲ୍ଲୀ ପୁଣି ସମଗ୍ର ଜଗତ୍ ।

## ୪୭

ପୂର୍ଣ୍ଣା ନଦୀ କିଷନ୍‌ଗଂଗା ଡେଇଁ,
ଆହୁରି ତଳକୁ, ଦକ୍ଷିଣକୁ, ଲଂଘି ଟିଥ୍‌ୱାଲ୍‌ର ପର୍ବତମାଳା,
ଦକ୍ଷିଣକୁ ପୁଣି, ହାଜିପୀର୍,
ଆଉ ଦକ୍ଷିଣକୁ ପୁଁଚ୍ ସେଠି ଯାହା ମହିସ୍ଥାନ,
ପଶ୍ଚିମରେ ପାକିସ୍ଥାନ୍ ରାଜଧାନୀ ରାୱଲ୍‌ପିଣ୍ଡି ବେଶ କୋଶ ଦୂରରେ
ପୂର୍ବରେ ସେତିକି ଦୂରେ ଅମୃତସର୍
ଆସନ୍ତି ସେ ଦଳ ଦଳ ପାକିସ୍ଥାନୀ ସୈନ୍ୟ
ଅ-ଲଡ଼ୁଆ ଭଦ୍ର ଯାତ୍ରୀ ବେଶେ
ପୋଡ଼ନ୍ତି ସେ ଗାଁ ଗଣ୍ଡା କ୍ଷେତ, କାଟି ହତିଆର
ମାରନ୍ତି ସେ ନିରୀହ ମଣିଷ କରନ୍ତି ଲୁଟ୍‌ପାଟ୍
ଭାଙ୍ଗନ୍ତି ପୋଲ ସଡ଼କ,
ଆପଣାକୁ କହନ୍ତି ସେ ମୁଜାହିଦ୍, ଧାଣକର୍ତ୍ତା !

କାଶ୍ମୀର୍ ଭୂସ୍ୱର୍ଗବାସୀ
ବୁଝେ ଇସ୍‌ଲାମ୍ ଧର୍ମତତ୍ତ୍ୱ
ଧର୍ମ ତାକୁ ଦିଏ ସ୍ପଷ୍ଟ ଦୃଷ୍ଟି, ନ ଦିଏ ଅନ୍ଧତା
ସେ ବୁଝେ ସେ ଆଗ ଭାରତୀୟ

ପ୍ରାଣ ଦେବତା ପ୍ୟାରେଓ୍ୱଟନ୍ ଲାଗି
ଦୁଷ୍ମନ୍‌ଙ୍କୁ ନ ଦେଇ ଠା, ପାଣି, ନିଆଁ
ନ କାଟିବ ଖାଲ ଆଣିବାକୁ ଘରକୁ କୁମ୍ଭୀର
ଦେବ ତଡ଼ ପରଦେଶୀ ହମଲାଦାର୍
ଉଦାର ଭାରତ ରାଷ୍ଟ୍ର
ଭାବେ ଏ ଝମେଲା ନୁହେଁ ଭାରତୀୟ ସୈନ୍ୟ ନାକି,
ହୋଇନାହିଁ ଯୁଦ୍ଧର ଘୋଷଣା,
ଭାରତର କାର୍ଯ୍ୟଦକ୍ଷ ପୁଲିସ୍ ଫଉଜ
ଯଥେଷ୍ଟ ହୋଇବେ ସ୍ତାଙ୍କୁ ସଜାଡ଼ ଦେବାକୁ ।

ଭାରତ କରେ ଆପତ୍ତି ପାକିସ୍ଥାନ ପାଖେ,
ସେ ଆପତ୍ତି ଶୁଣେଇ ଜଗତ୍ , ଜୁଳୁଜୁଳୁ ଦେଖନ୍ତି ୟୁ ଏନ୍ ଓ,
ପାକିସ୍ଥାନ୍ ଚଡ଼ି ଚଡ଼ି ଚାଲାଏ ପ୍ରଖର ଉତ୍ତେଜିତ ସ୍ୱରେ—
ହେଇ ଦେଖ, କାଶ୍ମୀରରେ ସ୍ୱେ ଗଣ ଆନ୍ଦୋଳନ
ଆତ୍ମ ନିୟନ୍ତ୍ରଣ ପାଇଁ,

ଭାରତୀୟ ପୁଲିସ୍ ଫୌଜ
ସଙ୍ଗେ ଯେନ କାଶ୍ମୀର୍‌ର ସ୍ୱଦେଶବତ୍ସଳ ଗ୍ରାମବାସୀଦଳ
ଚଢ଼ନ୍ତି ପାହାଡ଼, ଖୋଜନ୍ତି ସେ ବଣ ବୁଦା ତୋଟା ଆଉ
ଗୋରୁଶାଳ
ଘଉଡ଼ାନ୍ତି ଗଣ୍ଡଗୋଳକାରୀ

ନାନାସ୍ଥାନେ ହୁଏ ଗୁଳି ହତିଆର ହେଲା ହସ୍ତଗତ
ପ୍ରାଣ ଯେନ ପଳାଇଯାଆନ୍ତି ଧ୍ୱଂସ ଲୁଟ୍‌ପାଟ୍‌କାରୀ,
ପଡ଼ନ୍ତି ଅନେକ ଧରା, ପୂରେ ଜେଲ୍, ନୂଆ ଜେଲ୍ ହୁଏ ଗଢ଼ା
ତାଙ୍କ ଅଭ୍ୟର୍ଥନା ପାଇଁ,
ଧରାପଡ଼େ ଷଡଯନ୍ତ୍ରର ନାନାଦି ଖସଡ଼ା, ନକ୍‌ସା, କାଗଜ,
ମେସିନ୍‌ଗନ୍, ରାଇଫଲ୍, ହାତବୋମା,

ଆଉ ଧରାପଡ଼େ ସେମାନଙ୍କ ପରିଚୟ
କିଏ କ'ଣ ପାକିସ୍ଥାନ୍ ସେନାରେ,
କିଏ ଦେଇଛି ତାଲିମ୍
କିଏ ପଠାଇଛି କ'ଣ କିଛି ।
ଗଲା ବିତି ଦିନହପ୍ତା,
ତା'ପରେ —

ସେପ୍ଟେମ୍ବର ଏକ, ଊଣେଇଶ ପଁଷଠି
କଥା ନାହିଁ ବାର୍ତ୍ତା ନାହିଁ ଆଗରୁ ତା' ନାହିଁ ତ ସୂଚନା,
ନାହିଁ ପଦେ ପ୍ରକାଶ୍ୟରେ ସମର ଘୋଷଣା,
ସଙ୍ଗେ ନେଇ ବହୁ ଟ୍ୟାଙ୍କ୍, ପ୍ୟାଟନ୍ ଓ ଶେର୍ମାନ୍,
ନେଇ ଏକ ବିଶାଳ ବାହିନୀ, ନାନା ମାରଣାସ୍ତ୍ର, ଅତି ଆଧୁନିକ,
ଆମେରିକା ସୌଜନ୍ୟରୁ ପ୍ରାପ୍ତ,
ଦେଇ ଭୟଙ୍କର କଳକଳା ରଡ଼ି
ଅତର୍କିତେ ଡେଇଁପଡ଼େ ପାକିସ୍ଥାନ ଭାରତ ଉପରେ
ଆନ୍ତର୍ଜାତିକ ସୀମା ରେଖା ଡେଇଁ
ଛମ୍ବ ପାଖେ, ସିଧା,

ଏଇତ ସୁବିଧା
ପାକିସ୍ଥାନୀ ସିଆଲ୍‌କୋଟ ରଣଘାଟି ସେଠୁ
ପନ୍ଦରକୋଶ ମୋଟେ ଦକ୍ଷିଣ ପଶ୍ଚିମ ପଟେ,
ପାଞ୍ଚକୋଶ ଜାଉରିଆଁ, ଦକ୍ଷିଣ ପୂର୍ବକୁ,
ଆଉ ପାଞ୍ଚକୋଶ ଗଲେ ଆଖ୍‌ନୁର୍
ଆଉ ଦଶକୋଶ ନ ହେଉଣୁ ପଡ଼ିଯିବ ଜାମ୍ମୁ,
ତା'ପରେ ଆସିବ ପଛେ ଆଉ ଏକ ସିନା
ସିଆଲ୍‌କୋଟର ପଚାଶକୋଶ ଦକ୍ଷିଣରୁ ଲାହୋରରୁ
ସୁରକ୍ଷିତ ଲାହୋର ଅଛି ସତେ ମ୍ୟାଜିନଟ୍ ଲାଇନ୍

ପଦେ ପଦେ ମୃତ୍ୟୁ ଆଜ ପିଲବକ୍ସ ଓ ମାଇନ୍
ଆଉ ଇଚଗଲ କେନାଲ୍ ପୃଥିବୀ ବ୍ୟାଙ୍କ ଟଙ୍କାରେ
ଗଢ଼ା ଏକ କଂକ୍ରିଟ୍‌ର ଖାଇ ଶହେ ଫୁଟ୍ ଓସାର
ସତେବା ଲହୋର୍ ରବଣର ସ୍ୱର୍ଣ୍ଣଲଙ୍କା
ଅଭେଦ୍ୟ ଅଜସ୍ରଗଡ଼

ଭାରତୀୟ ସୀମା ସେଠ୍ ସାତକୋଶ ଦୂର,
ଗଲେ ସିଧା କୋଡ଼ ମାଇଲ, ପୂର୍ବକୁ
ଦଶିବ ଅମୃତସର ସୁନାର ମନ୍ଦର, ଶିଖ୍ ଧର୍ମପୀଠ
ଆଜ ଯାଏ କଏ
ସତେ ଅବା ଦୁଇ ଷଣ୍ଢ ଆସି ହାତ
ଭେଟାଭେଟି ହେବେ,
ତା'ପରେ ତ ଦଲ୍ଲୀ ଚଲେ !

ଜାଳପୋଡ଼ ଲୁରଖାର କର
ଆକାଶକୁ କର କଳା ବାରୁଦ ଧୂଆଁରେ
ଦର୍‌ବଳପ୍ସେ ଖେଳାଇ ନଆଁର ତେଜ
ସଜାଇ ତା' ଟ୍ୟାଙ୍କ୍ ମାଳ ଇନ୍‌ଫ୍ୟାଣ୍ଟ୍ରି ଓ ଆର୍ମଡ଼୍ ଡଭଜନ୍
ମାଡ଼ଲ୍ଲେ ପାକ୍ ଗୁମ୍ଫ ଟପି ଜଉରଆଁ ମୁହାଁ
ଅଦ୍ଭୁତ ସେ ରଣନୀତ, ନ କନ୍ଦ୍ର, ନ ପୋଛୁ ହତ୍ୟା କରବା ଉଦ୍ୟମ ।

ସେପେଟ୍‌ମ୍ବର ପାଞ୍ଚ
ପାକସ୍ଥାନ ପେଷେ ସେବର ଜେଟ୍ ବମାନ
ଅମୃତ୍‌ସର୍ ପାଖ ଓ୍ୱାଘା
ମାରନ୍ତ ହାବେଳ ଉଡାଜାହାଜରୁ ବମାନଘାଟି ଆଡ଼େ
ନ ପାରନ୍ତ କଛୁ କର ଯାଆନ୍ତ ପଳାଇ
ଆସନ୍ତ ସେ ପୁଣି ପୁଣି ।

## ୪୮

ତା'ହେଲେ ଏ ସତେ
ଯୁଦ୍ଧ !

ଭାରତ ବୁଝିନ । ପାକସ୍ଥାନ୍ କଥା କହୁ ନାହିଁ ଭୁଟ୍ଟୋ,
କହୁଛି
ବନ୍ଧୁକ ବାଟେ, ଛାମ୍ବ୍ ଜଉରିଆଁରେ,
କହୁଛି ନୌସେନା ବାଟେ, ଦ୍ୱାରକା ବନ୍ଦରେ,
କହୁଛି ତା ସେବର୍‌ଜେଟ୍ ଉଡ଼ାଜାହାଜରୁ ଗୁଳି ଓ ହାତବୋମା ମାରି,
ଆଜି ତାର ସବୁ ଷଡ଼ଯନ୍ତ୍ର, ଅଭିସନ୍ଧି, ଦିଲ୍ଲୀ ଗମନର ଆଶା,
ଧରା ପଡ଼ୁଛି ।

ସେ ଭାଷାର ଉତ୍ତର, ବନ୍ଧୁକ୍ ଭାଷାର
ପାଇବ ସେ ସେହି ବନ୍ଧୁକରେ,
ସତେ ଅବା କୁରୁକ୍ଷେତ୍ର ଯୁଦ୍ଧକ୍ଷେତ୍ରେ
କ୍ଷେପିବା ଆଗରୁ ଏକ ଶର କି ବାଟୁଳି
ଧର୍ମରାଜା ଯୁଧିଷ୍ଠିର କରନ୍ତି ଘୋଷଣା—

"ସାକ୍ଷୀରହ ଆକାଶ ପୃଥିବୀ, ଦଶଦିଗପାଳେ, ସାରାବିଶ୍ୱ,
ସାକ୍ଷୀ ରହ ହେ ଈଶ୍ୱର, ହେ ସ୍ରଷ୍ଟା,
ହେ ସୂର୍ଯ୍ୟଚନ୍ଦ୍ର, ହେ ଗ୍ରହ-ନକ୍ଷତ୍ର, ଦେବଲୋକ, ପିତୃଲୋକ,
ନରଲୋକ,
ଯେତେ ପ୍ରେତ, ଗନ୍ଧର୍ବ କିନ୍ନର ଯକ୍ଷ
ହେ ଅଗ୍ନି, ହେ ବାୟୁ, ହେ ଜଳ, ହେ ତେଜ,
ସାକ୍ଷୀ ରହ ହିମବନ୍ତ
ଏ ଦେଶର ଯେତେକ ପର୍ବତ ଯେତେ ନଦ-ନଦୀ
ବାଧ୍ୟହେଲି ଧରିବାକୁ ଶସ୍ତ୍ର

ଆଚରିବ କ୍ଷତ୍ରିୟର ଧର୍ମ
କରିବ କର୍ତ୍ତବ୍ୟ
ଧର୍ମଶାସ୍ତ୍ରାନୁମୋଦିତ" ।

ସେଦିନର ଶୁଣିଲି ଘୋଷଣା
ଭାରତବର୍ଷର
ପୃଥିବୀର ରନ୍ଧ୍ରେ ରନ୍ଧ୍ରେ

ସେପ୍‌ଟେମ୍ବର ଛଅ, ଊଣେଇଶ ପଁଷଠି
ଭାରତର ବୀର ସେନା
ପାକିସ୍ତାନ ସୀମା ଲଂଘି
ମାଡ଼ିଲେ ଲାହୋର ଆଡ଼େ
ଆଗରୁଁ ଜାଣି ଶତ୍ରୁର କୂଟ କୌଶଳ,
ଆରମ୍ଭିଲେ ଲାହୋର ଫ୍ରଣ୍ଟ୍
ଆରମ୍ଭ ହୋଇଲା ପୃଥିବୀରେ ଦ୍ୱିତୀୟ ମହାଯୁଦ୍ଧ ପରେ
ଉତ୍କଟ ବୃହତ୍ତମ ଟ୍ୟାଙ୍କ୍ ଯୁଦ୍ଧ, ସ୍ଥଳଯୁଦ୍ଧ
ଅତ୍ୟନ୍ତ ପ୍ରବଳ, ଉଡ଼ାଜାହାଜର ଯୁଦ୍ଧ ।

ଜମ୍ମୁ ଜାଉରିଆଁ ପଟେ ଶତ୍ରୁର କଟକି ହେଲା ଥର ଥର
ଭାରତର ପ୍ରଚଣ୍ଡ ମାଡ଼ରେ
ପଳାଇ ଆସିଲା ଶତ୍ରୁ ଅଧିକାଂଶ ସୀମାନ୍ତ ଆଡ଼କୁ
ହରାଇ କେତେ ସେ ସୈନ୍ୟ, ସେନାପତି,
ପ୍ୟାଟନ୍‌ଟ୍ୟାଙ୍କ ତୋପ ଓ କମାଣ
ଘୋଷିହେଲା ହୃଦପୂଟେ
ଅତୀତର ସନ୍ଥଜନ ଉକ୍ତି
ଅବା ଅଭିଶାପ
"ଦିଲ୍ଲୀ ହନୋଜ୍ ଦୂର୍ ହାସ୍ତ !"
କାହିଁ ଦିଲ୍ଲୀ, ତା ଆକାଶ ତଳ
ବହୁଦୂର ଏଠୁ ବହୁଦୂର

## ୪୯

କାମୁଡ଼ ରହିଲା ଶତ୍ରୁ ଗ୍ରାମ୍‌ ଜଉରିଆଁ ପଟେ
ସୀମାନ୍ତରୁ ସାତକୋଶ ମାତ୍ରି
ଏଣେ ଭାରତୀୟ ସେନା, ଦଳେ ଗଲେ ଟିଥ୍‌ୱାଲ୍‌ ଟପି କିଷନ୍‌
ଗଙ୍ଗାକୂଳ

ଦଳେ ଗଲେ ଉରି ପୁଞ୍ଛ ହାଜିପୀର୍‌
ହେଲେ ଦହେଁ ଭେଟାଭେଟି
ବନ୍ଦ ହେଲା
ପାକିସ୍ତାନୁଁ କାଶ୍ମୀରକୁ ଆସିବାର ବାଟ
କେତେ କେତେ ପାକିସ୍ତାନୀ ଯୁଦ୍ଧ ଘାଣ୍ଟି
କେତେ ପର୍ବତ ଓ ଉପତ୍ୟକା
ରହିଲା ମୁଠାରେ ଭାରତର,

ଲାହୋର୍‌ ଫ୍ରଣ୍ଟ୍‌ରେ
ଭାରତ ଖୋଲିଲା
ସତେ ଅବା ଶିବ ତ୍ରିଶୂଳରେ ମାଣ
ତିନିଗୋଟି କ୍ଷତ ପାକିସ୍ତାନ ହୃତ୍‌ପିଣ୍ଡରେ
ଯୁଦ୍ଧର ସେ ତିନୋଟି ସେକ୍ଟର
ଖଇରା-ଇଚ୍ଛୋଗିଲ୍‌ କେନାଲ୍‌ ସେକ୍ଟର
ଖେମ୍‌-କରନ୍‌ ସେକ୍ଟର୍‌

ଖେମ୍‌-କରନ୍‌ ସେକ୍ଟର୍‌
ଏକା ଏହି ରଣେ, ପାକିସ୍ତାନ୍‌ ନିୟୋଜିଲା ଦେଢ଼ଶହ ଟ୍ୟାଙ୍କ୍‌
ହେଲା ପ୍ରବଳତମ ସଂଘର୍ଷ
କିନ୍ତୁ ଏଠି ଭାରତର ସମର କୌଶଳ
ନୂଆ ରଣ ଇତିହାସ ସୃଷ୍ଟି କଲା ପୃଥିବୀରେ,

କାଶ୍ମୁର ସହର ପାଖେ
ଲଗିଥାଏ ଅନବରତ ପକିସ୍ଥାନ ପଟୁ ଗୁଳିବର୍ଷା
ଘଟେ ଅବା ମରଣର ବର୍ଷାଟୋପା ଅବିରାମ
ଟ୍ୟାଙ୍କ୍ ତୋପ ମେସିନ୍‌ଗନ୍ ରାଇଫ୍ଲରୁ
ଉପରୁ ଉଡାଜାହାଜ ଢାଳେ ବୋମା
ତଳେ ବିସ୍ତୀର୍ଣ୍ଣ ଅଞ୍ଚଳ ମାଡ଼ ଶତ୍ରୁର ମାଇନ୍
ଛୁଇଁଲେ ଫୁଟିବ
ସେଇ କଣ୍ଟା ବୃଷ୍ଟି ତଳେ
ଆଗେଇଲେ ଭାରତର ବୀର ଜଓ୍ୱାନ୍
ଆଗ ଦୂରେ ମାଡ଼ିଯାଇ
ଶତ୍ରୁକୁ ଦେବାକୁ ପ୍ରଲୋଭନ କାଢ଼ିବାକୁ ତାର
ପ୍ୟାଟନ ଟ୍ୟାଙ୍କ୍ ନାନା ଅସ୍ତ୍ର
ଯେମନ୍ତେ ସେ ଏକ ସ୍ଥାନେ ଠୁଳ ହେବ,
ହଟିଲେ ପଛକୁ ଖଣ୍ଡେ ଜାଣି ଜାଣି,
ଶତ୍ରୁର ଚେଳଲା ଆଶା ଆସିଲା ଦଉଡ଼ି
ଗାତ ଛାଡ଼ି ସାପ ଯେମନ୍ତେ ପରୀକ୍ଷିତ-ଯଜ୍ଞେ,
ଆସିଲେ ସେସବୁ ଟ୍ୟାଙ୍କ୍
ଆଜ ପାକିସ୍ଥାନ୍ ସେନାଙ୍କର ସର୍ବୋତ୍କୃଷ୍ଟ ଯୋଦ୍ଧା
ଲଗିଲା ପ୍ରତିଦ୍ୱନ୍ଦ୍ୱିତା କେ ଜାଣିବ ଆଗ ପ୍ଲେଟ
ହଟୁଥିବା ଭାରତର ଥାଟର ପଛଆଡ଼ୁ
ପୂର୍ଣ୍ଣହେଲା ଭାରତର ବୀର ସେନାପତିଙ୍କର ଯୋଜନା ଓ ମନୋରଥ
ସବୁ ଶତ୍ରୁ ଉପଗତ ଏଠି
ଏଥର ଯେ ଲଗିବ ସଂହାର,
ପଲକ ପଡ଼ିବା ଆଗୁଁ ଲେଉଟି ପଡ଼ିଲା ଭାରତୀୟ ସେନା,
ଘେରିଗଲା ଶତ୍ରୁ ଚାରିପଟେ
ସେ ଘେର ଭିତରେ ରହିଲା ଶତ୍ରୁର ପ୍ୟାଟନ୍ ଟ୍ୟାଙ୍କ୍ ଦେଢ଼ଶହ
ଆଜ ତା ପ୍ରଥମ ଆର୍ମିର୍ଡ ଡିଭିଜନ
ଖଣ ସେ ହେଲା ତାପରେ ଘୋଟିଗଲା କି ପ୍ରଳୟ
କଣ ପାଲଟିଲେ ଭାରତ ଜଓ୍ୱାନ୍ ଗୋଟି ଗୋଟି

ଅର୍ଦ୍ଧର ଓ ସ୍ୱପ୍ନ କଳ୍ପନା ଓ ଉନ୍ମାଦନା
ଅବା କେତେ ମହାଭାରତ
ତେଜ ସୁନ୍ଦର ଆଶା
ଶାନ୍ତିଗ୍ରାମ ଉତ୍ତର୍ଦ୍ଧ ଦ୍ୟୋକନ୍ଦ୍ର ବେଲଜେନ
ଧର୍ମ୍ମ ଘୋଷଣା ଦେବ
ଯେତେ ଅବା ସାଧେନ ଦାଉଦ ଲଳା ଯମାପ୍ତ
ଦାଁ ଲେଖି ଦେବ ପ୍ରେମ
ମନେ ଶାନ୍ତିଗ୍ରାମ ସେ ସେବକ ଦେଶାନ୍ତର ଆଉ କେତେ କେତେ
ଶାନ୍ତିଗ୍ରାମ ତଥନ ଅର୍ଦ୍ଧ' କିରଣକ ଚକ୍ଷୁ ଦେଲ
ଅଶାନ୍ତ ଭୋଗ ଭାବ ଭଲ ଲତ
ଆଉ ସ୍ୱାଧୀନ୍ ଝାଙ୍କ୍ ଲତ
ବୃନ୍ଦାଙ୍କେ ବନ୍ଧୁ ପ୍ରାଣରେ ଦୋଳକ ଅପାର ଧୂଳ
ତେବେ ଅବା ଏକାଭାବ ଲଭି ହୋଇବେ ଅତନ
ଏବେ ବି ଉଚ୍ଚତ,
ମାନବର ଶତ୍ ଲେଠି, ଧର୍ମ୍ମ ଅଧ୍ୟୁତ୍ର,
ଲଭନ୍ତ କର୍ତ୍ତ୍ୱାନ୍ ହାତେ ଦେଲେ କରୀ ଶହ ଶହ ହଜାର ହଜାର
ତେବେ ମନେ ଭେଦା ନାହିଁ,
ଭୋକ୍ଷ୍ୟ ଲଘୁରେ ପ୍ରାଣ ଦେବ ଉଦାର ଉଦାର
ତେବେ ମନେ ଜନ ଉଷ ସବେ ମନ୍ତ୍ରମଣ୍ଡ ହୋଇ

ଆଉ ଏକ ସେବର
ଲେଲନ୍ତୁ ଲେନିନ୍ ଭେଦାକ୍ ଉଦୀନ୍ତ।
ସେପ୍ଟେମ୍ବର ଛଅ ତାରିଖ ଦିନ
ଅମୃତସର-ଓ୍ୱାଘା ଆନ୍ତ୍ ମାର୍ଗଅଘି ଝଟି ସୀମାଘାର
ଆଉ ଉଭେ ଏଇ ଘଟେ
ଲଭିଲ୍ ଶ୍ରେଷ୍ଠ ଦୂତ
ଏହ୍ ଦ୍ରବ୍ୟ ଭେଦାନ୍ତରେ ଦେଲେ ଶାନ୍ତିଗ୍ରହ
ତା ଉପର ଗୋଲ ବୃନ୍ଦମାନ୍ଦେ ଧ୍ୱଂସ କଲେ

ତଥାପି ନଇଁଲେ ନାହିଁ ଭାରତୀୟ ସେନା
ଗଲେ ମାଡ଼ି ଭଙ୍ଗା ନମ୍ରାଳ ନର୍ଦ୍ଦି ଶ୍ରମ ଦର୍ପେ
ଜାଲ୍ଲୋଠାରେ ଥିବା ବାଟା କମ୍ପାନୀର
ଫ୍ୟାକ୍ଟ୍ରି ପର୍ଯ୍ୟନ୍ତ, ଲାହୋର ସେଠୁ ମାତ୍ର ଛ'ମାଇଲ ।

ଲାହୋରରେ ଉଠିଲା ଆତଙ୍କ
ଗଲା ଗଲା ଆଇଲା ଆଇଲା
ଦଶ ଲକ୍ଷ ନାଗରିକ ଭୟ ତ୍ରାସ ଦେଖ
ନମାଜ ଆଜାନ୍ ନ ଘଣ୍ଟଣା
ବାଟଘାଟ ପୂର୍ଣ୍ଣ କରି ସେ ଯୁଆଡ଼େ ଧାଆନ୍ତି ଲୋକେ
ଘର ଦ୍ୱାର ଗୃହ
ସବୁ ଅପର୍ଯ୍ୟସ୍ତ
ଲାହୋରୁ ରକ୍ଷିଲ ଗଣ୍ଡକର ତୋପ ତଳେ
ମନ କଲେ ହୋଇବ ପାଉଁଶ,
ନ କରେ ଭାରତ ତାହା
ନୁହେଁ ସେ ପାକିସ୍ତାନ,
ନ ମାରିବ ଗୋଟିଏ ବି ବେ-ସାମରିକ
ଟିପ ଦେବ ନାହିଁ ଅ-ଲଢ଼ୁଆ ଦେହେ
ଅଥବା ସମ୍ପତ୍ତିରେ,
ତାର ଲକ୍ଷ୍ୟ ଅଟେ,
ସେ ଖୋଜନ୍ତି ଭାଙ୍ଗିବାକୁ
ପାକିସ୍ତାନର ଓ୍ୱାର୍ ମେସିନ୍
ତାର ଟ୍ୟାଙ୍କ୍, ତୋପ ବିମାନ ଓ ରଣ ଘାଟିମାନ
ଯେପରି ଏ ଶତ୍ରୁ ହେବ ନିରସ୍ତ୍ର ଓ ଖର୍ବ
ଆଉ ନ ଉଠିବ

ଜାଲ୍ଲୋ ଆଉ, ଏଏ ଶତ୍ରୁ
ସତେ ଅବା ତାର ଜୀବନ ମରଣ ସଂଗ୍ରାମ
ହଟିଆସେ ଭାରତ ସେନାଙ୍କ ପାକିସ୍ତାନର ଦସ୍ୟାଳ ଗାଁକୁ
ତିନିମାଇଲ ବାଟ

ଇଚଗଲ୍ କେନାଲ ପୂର୍ବ ପଟେ ଦୃଢ଼ କରେ ତା ଆସନ
ତ୍ରିରଙ୍ଗ ପତାକା ଉଡ଼େ ସେଠି ଫରଫର ।

ସେପ୍‌ଟେମ୍ବର ଦଶ, ରାତ୍ରି ଆଠ
ପାକିସ୍ଥାନେ ବୁର୍କି ସହର ପାଖେ ଘମାଘୋଟ ଯୁଦ୍ଧ
ଚନେପଟୁ ବୁର୍କି ଅଞ୍ଚଳକୁ ଭାରତ କରେ ଦଖଲ
ଶତ୍ରୁ ଦିଏ ପ୍ରବଳ ବୋମାମାଡ଼, ଜମା କରେ ବହୁତ ପ୍ୟାଟନ ଟ୍ୟାଙ୍କ୍,
ଲାଗେ ସତେ ଅବା ହାତକୁ ହାତ ଲଢ଼େଇ, ଜଣକୁ ଜଣ,
ଶତ୍ରୁ ମାରେ ତାର-ବୋମା ଅନ୍ଧାରକୁ କରେ ଆଲୁଅ,
ତାର ଗୁଳି ବର୍ଷା ତଳେ, ମାଇନ୍ ଉପରେ,
ଜୀବନକୁ ତୁଚ୍ଛ ଦେଇ ଅପୂର୍ବ ସାହସେ ବୁଲେ ଭାରତୀୟ ଜଓ୍ୱାନ୍
ଆଗେ ଆଗେ ଧାଏଁ ତାର ଅଫିସର,
ଆଖି ଖୋଷା ମୁଣ୍ଡଭୂଷା ଯୁଦ୍ଧ
କାଲୁ ପୁଣି ପାକିସ୍ଥାନ ଭାଗ୍ୟେ
ଲେଖାଥିଲା ପରାଜୟ
ଗଲା ବୁର୍କି ଖୁର୍ଦ୍ଦ୍ (ସାନ)
ଆଉ ବଡ଼ ବୁର୍କି କାଲାନ୍ (ବଡ଼)
ତା ଆରଦିନ ସକାଳେ
ବୁର୍କି ସହରର ପତନ ହେଲା,
ପୁଣି କେତେ ଶତ୍ରୁ ବନ୍ଦୀ, କେତେ ତାର ଟ୍ୟାଙ୍କ୍ ଧ୍ୱଂସ,
ହତାହତ କେତେ ତାର କଳନା ନାହିଁ,
ଅଜେୟ ସେ ଗଡ଼ ହୋଇଥିଲା, ପ୍ରତି ଘର ଛାତେ
ଖଞ୍ଜା ହୋଇଥିଲା ପାକିସ୍ଥାନୀ ତୋପ ।

ସେପ୍‌ଟେମ୍ବର ଛଅ ଅଗ୍ରଗତି ଆଗ ଜଲ୍ଲୋ ଯାଏକେ
ପୁଣି ପଛୁଆ, ଦୁଇ କୋଶ, ଦୟାଲ୍ ଗାଁ ଯାଏକେ
ଅଧିକ ବିପଜ୍ଜନକ ହେଲା ନାଇକୁଙ୍କୁ ଢୋଗ୍ରାଇ ଗାଁ ପଟୁ,
ଶତ୍ରୁ ମାରେ ତୋପ ତା ଉଦ୍ୟମ ପ୍ରାଣମୂର୍ଚ୍ଛା
ପଡ଼ୁଛି ତା ଜୀବନ ଉପରେ ।

ତେଣୁ ,
ସେପ୍ଟେମ୍ବର ଏକୋଇଶ ନିଶା ରାତ୍ର,
ଶତ୍ରୁ ପଟ୍ଟ ଟ୍ୟାଙ୍କ୍ ଓ ତୋପରୁ ଲାଗିଥାଏ ପ୍ରବଳ ଗୁଳିବର୍ଷଣ
ମଧ୍ୟେ ମଧ୍ୟେ ଉଜ୍ଜଳ ଆଲୋକ କରି ମର୍ଟାର ସେଲ୍
ଉପରେ ଗର୍ଜୁଛି ଶତ୍ରୁର ସେବର ଜେଟ୍‌ମାନ, ଛାଡ଼ୁଛି ନେପାମ୍ ବୋମା
ଭୂଇଁ ପରେ ନାନା ସ୍ଥାନେ ଅଗଣ୍ୟ ଅଗଣ୍ୟ ମାଇନ୍
ଯେ ଆସିବ ବିସ୍ଫୋରଣ ମୁଖୁଁ ନାହିଁ ରକ୍ଷା
ତାହା ଛଡ଼ା ଆଜ୍ଞା ଇସ୍ପାତରେ ଗଢ଼ା ମାଟି ଗୋବରରେ ଲିପା ଗାଁ
ପରି ଦିଶିବାକୁ
ପିଲ୍ ବକ୍ସ ଘରୁ ଶତ୍ରୁ ମାରେ ତୋପ ଓ କମାଣ
ତା ପିଠିଆଡ଼େ ତାର ଟ୍ୟାଙ୍କ୍ ଓ ମେସିନ୍‌ଗନ୍‌ର ଦୁର୍ଭେଦ୍ୟ ଜଙ୍ଗଲ
ସେହି ବ୍ୟୂହ ଅନ୍ତରାଳେ ଡୋଗରାଇ ଗ୍ରାମେ
ଶତ୍ରୁ ପକ୍ଷ ସୈନ୍ୟ ଥିଲେ ନିଶ୍ଚିନ୍ତ ସୁସ୍ଥିରେ
ନାହିଁ ଯହିଁ ଗଳିବାକୁ ମଶକକୁ ଫାଙ୍କ
କେ ଆସି ପାରିବ ଏଥି ?
ଏଇ ପ୍ରଶ୍ନ କରୁଥିଲା ଆପଣାକୁ ଆପେ ଶତ୍ରୁ ପକ୍ଷ ସେନାପତି,
ପାଇଜାମା ପିନ୍ଧି ଖୋଲି ଦେଇଁ କାମିଜ୍
ଆଉଜିଥିଲେ ସେ ଏକ ଖଟିଆରେ
କ୍ଳାନ୍ତ ଆଖି ବେଳେ ବେଳେ ନିଦେ ଢୁଳୁଢୁଳୁ
ଲେଫ୍‌ଟେନେଣ୍ଟ୍ କର୍ଣ୍ଣେଲ୍ ଗୋଲଓ୍ୱାଲା ।

ସେହି ନିଶା ରାତି ବେଳେ
ଭାରତୀୟ ସେନା ଥାଟେ ପ୍ରସରିଲା ଆଜ୍ଞା
ଯିବାକୁ ପଡ଼ିବ ଲକ୍ଷାନ୍ତକେ, ଡୋଗ୍ରାଇଠୁଁ
ମାଇଲଏ ଉତ୍ତର ପୂର୍ବକୁ ଅବସ୍ଥିତ ସେହି ଗ୍ରାମ,
ଚାଲିଲେ ସଇନ
ସେହି ଗୁଳି ମାଡ ଭିତରକୁ
ଆତ୍ମରକ୍ଷା କରି ସେହି ନିଶ୍ଚିତ ମୃତ୍ୟୁରୁ ନାନାଦି କୌଶଳେ
କେତେବେଳେ ତଳେ ପଡ଼ି ଗୁଡ଼ୁଣ୍ଡି ଗୁଡ଼ୁଣ୍ଡି

କେତେବେଳେ ଅବା ଠିଆ ହୋଇ,
ହେଲେ କତି କତି ଆଗରେ ହେଇ ଲଖାନ୍‌କେ
ଗର୍ଜି ଉଠିଲା ତାଙ୍କ ରାଇଫଲ୍ ଓ ତୋପ, ହାତର ଗ୍ରେନେଡ୍
ହେଇଯାଏ ଦୁଇଶ ଦୁଇଶ ଗଜେ
ଶତ୍ରୁପକ୍ଷ ପିଲ୍‌ବକସ୍ ଗୋଟି ଗୋଟି, ଚୂନା ହୁଏ,
ଲାଗିଲା ପ୍ରବଳ ଯୁଦ୍ଧ, ଅନ୍ଧାର ଭିତରେ ଶତ୍ରୁପକ୍ଷ ସେନା ଆଖି
ଲାଖେ ସେଇଠାରେ, କରେ ଶତ୍ରୁ ସବୁ ଶକ୍ତି ଠୁଳ,

ଠିକ୍ ସେତେବେଳେ, ରାତି ହେବ ଦେଢ଼
ପହଞ୍ଚିଲେ ଆସି ଆଉ ଦଳେ ଭାରତୀୟ ସେନା
ଜାଠ୍ ଯୋଦ୍ଧା,
ବୁଲପଡ଼ି ପଛୁ
ଦୁଃସାହସେ ଲଙ୍ଘି ଶତ୍ରୁର ମାଇନ୍
ଅତର୍କିତେ କଲେ ଆକ୍ରମଣ ଡୋଗ୍ରା ଗାଁ ଘାଟି,

ତା'ପରେ
ସବୁହେଲା ଲଣ୍ଡଭଣ୍ଡ ପାକିସ୍ଥାନୀ କ୍ୟାମ୍ପ
ଧରିଲା ଗ୍ଲାନିଆ କୁଆଡ଼ୁ ଆସିଲେ କଏ ଦୁର୍ଦ୍ଧର୍ଷ ଯେସ୍ତେ ମୃତ୍ୟୁର ଫଉଜ,
ଧାଏଁ କମାଣ୍ଡର ସାମରିକ ବେଶ ନାହିଁ ଦେହେ ଖାଲି ପାଇଜାମା
ଧାଏଁ କଏ କେଉଁଆଡ଼େ, ଚଢ଼େ ଆପଣା ମାଇନ୍, ହୁଏ ଖଣ୍ଡ ଖଣ୍ଡ
ଏଇ ଶତ୍ରୁ ଏଇ ଶତ୍ରୁ ବୋଲି ପାକିସ୍ଥାନ ଘୋଡ଼ା ଟିପେ ପାକିସ୍ଥାନୀ
ଉପରକୁ
ଆଉ, ଘେରେଇ କରି ବାରମ୍ବାର ଷ୍ଟେନ୍‌ଗାନେ ଭାରତୀୟ
ଜାଠ୍ ଫଉଜ
ପଛୋ ପାଛୋ ମଲେ ତିନିଶହ ପାକ୍ ସୈନ୍ୟ
ଫଟେଜର ଫାଟିଲା, ସବୁ ବନ୍ଧୁକ ଚୁପ୍,
ପଡ଼ିଛି ଅଖଣ୍ଡ ହୋଇ କେତେ ଟ୍ୟାଙ୍କ୍ ସରଞ୍ଜାମ ସହ
ବିକଟାଳ ଟେକ ହି' ବାହା ଉପରକୁ ସଙ୍ଗୀନ୍ ମୁନ ଆଗେ

ଆତ୍ମ ସମର୍ପଣ କରନ୍ତି ପାକିସ୍ତାନୀ ସୈନ୍ୟ
କମ୍ପି ଥର ଥର,
ଆଉ ତାଙ୍କ ଲେଫ୍‌ଟନେଣ୍ଟ କର୍ଣ୍ଣେଲ୍‌ ଟଗାଲ୍‌ଓ୍ୱାଲ,
ଆଉ ସ୍ତରଜଣ ମେଜର, ସ୍ତରଜଣ ଜେସିଓ,
ହାଁ ବନ୍ଦୀହେଲେ !

ଲାହୋର ସେକ୍ଟରେ ସେଇ ଶେଷ ଯୁଦ୍ଧ
ଭାଙ୍ଗିବାକୁ ଶତ୍ରୁ ରଣ ଯନ୍ତ୍ର ମେରୁଦଣ୍ଡ ଅଥବା ହୃତ୍‌ପିଣ୍ଡ
ସେଇ ଯାହା ଅତି ଶକ୍ତିଶାଳୀ ସିଆଲ୍‌କୋଟ୍‌ ଘେର
ସ୍ଥାନେ ସ୍ଥାନେ କଂକ୍ରିଟ୍‌ ବଂକର୍ସ, ଇସ୍ପାତର ପିଲ୍‌ବକ୍ସ,
ଲଗାଲଗି ପ୍ରତିରକ୍ଷା ଘାଟି,
ଆମେରିକାଠାରୁ ମିଳିଥିବା ପ୍ୟାଟନ୍‌ ଟ୍ୟାଙ୍କ୍‌ର ସେଇ ଯାହା
ବଡ଼ ଗନ୍ତାଘର
ସ୍ୱପୁଳେ ଯେଉଁଠି ବସ୍ତୁବସ୍ତୁ ଶତ୍ରୁ ସେନ୍ୟ ଠୁଳ
ପଶ୍ଚିମ ପାକିସ୍ତାନ୍‌ ପ୍ରତିରକ୍ଷା କଳ୍ପେ ଯେଥିଲା ଡାହାଣ ହାତ
ତାର ରାଜଧାନୀ ପିଣ୍ଡିର ଯେ ସୁରକ୍ଷିତ ସିଂହଦ୍ୱାର
ଯଦିଚ ସେଠୁ ସେ
ଦେଢ଼ଶ ମାଇଲ୍‌ ବାଟ ଦକ୍ଷିଣକୁ
ଛାମ୍ବ୍‌ ସେଠୁ ତିରିଶ ମାଇଲ୍‌
ଲାହୋର ଓ ରାୱଲ୍‌ପିଣ୍ଡି ମଝି ସେତୁ ଯେଉଁଠାରୁ
ଆଗ ଆକ୍ରମଣ ପେଷିଥିଲା ପାକିସ୍ତାନ୍‌ ଛାମ୍ବ୍‌ ଜଉରିଆଁ

ସେପ୍‌ଟେମ୍ବର ଆଠ,
ଭାରତ ଜଓ୍ୱାନ ଗଲେ ସଦର୍ପରେ ସୀମାଟପି ସିଆଲ୍‌କୋଟ୍‌ ଆଡ଼େ,
ଏପରି ସାହସ, ଏପରି ରଣ କୌଶଳ,
କ୍ୱଚିତ୍‌ ଦେଖାଯାଏ କେଉଁ ଯୁଦ୍ଧେ ।
ତା ଆଗରେ ଥିଲା ତିନି ଲକ୍ଷ୍ୟ,
ଆଗ ହେଲା ସିଆଲ୍‌କୋଟ୍‌ଠାରୁ ଛାମ୍ବ୍‌ ଓ ଜାମ୍ମୁ

ବେଧିଦେବା ପଥ
ପୁଣି ସିଆଲକୋଟ୍‌ଠାରୁ ବାଜ୍ରାଗାନ୍ଧ,
ଛମ୍ବ ଜଉରିଆଁ ଟେଟ ଆକ୍ରମଣକାରୀ ଶତ୍ରୁ ନ ପାଇବ
ଚାହେଲେ ସାହାଯ୍ୟ ସିଆଲ୍‌କୋଟ୍ ଛାଉଣୀରୁ,
ଛିନ୍ନ ହେବ ଯୋଗାଯୋଗ ।

ଦ୍ୱିତୀୟରେ, ବନ୍ଦିଦେବା ଦକ୍ଷିଣକୁ ବାଟ
ଯେପରି ନପାଏ ଶତ୍ରୁବଳ ସିଆଲ୍‌କୋଟ୍‌ରୁ ଲାହୋରର ରଣାଙ୍ଗନେ,
ପାକିସ୍ତାନୀ ଅଜଗର ହେବ ଛିନଖଣ୍ଡ ।
ତୃତୀୟରେ, ମାଡ଼ିଯିବା ସିଆଲ୍‌କୋଟ୍‌ର
ଉତ୍ତର ଓ ଦକ୍ଷିଣପଟ୍ଟ, ଘେରରେ ପଡ଼ିବ ସିଆଲ୍‌କୋଟ୍,
ଦୁଇପଟ୍ଟ ହାଣଖାଇ ଭାଙ୍ଗିଯିବ ବଳ,
ସେ ଯେଉଁ ଅଜେୟ ଦୁର୍ଭେଦ୍ୟ ଆସୁରଗଡ଼
ହୋଇବ ଅରକ୍ଷ, ଶୂନ୍ୟ,
ସେଇଠି ଘଟିବ ପାକିସ୍ତାନୀ ଯୁଦ୍ଧଖୋର
ଆୟୋଜନର କବର ।

ସେପ୍‌ଟେମ୍ବର ଆଠ,
ଭାରତ ଜଓ୍ୱାନ୍ କଲେ ଜୟଯାତ୍ରା
ସିଆଲ୍‌କୋଟ୍ ଅଭିମୁଖେ
ଲଂଘି ଶତ୍ରୁ ଆକ୍ରମଣ
ଯାହା ବଢ଼ି ବଢ଼ି ଉଠେ ଯହୁଁ ସିଆଲ୍‌କୋଟ୍ ହୁଏ ସନ୍ନିକଟ
ସୀମାଟପି କୋଡ଼ିଏ ମାଇଲ୍ ଦୂରେ ପହଞ୍ଚିଲେ
ଦୁଇ ପାହାଡ଼ ନିକଟେ,
ମାଟେ ବାଁଶ୍ ଉଁଚେ ବାଁଶ୍ ଦୁଇ ସେ ପାହାଡ଼
ତା ତେଣିକି ଦେଢ଼କୋଶ ହେବ ସିଆଲ୍‌କୋଟ୍ ।

ଶତ୍ରୁର କଢ଼ୁଛି ତୋପ, ଗୁଳାଗୁଳି ବୃଷ୍ଟି
ଶବ୍ଦେ ଫାଟୁଛି କାନ, ଆକାଶରେ ଉଡ଼େ
ଶତ୍ରୁର ଉଡ଼ାଜାହାଜ ଅଜାଡ଼େ ସେ ବୋମା

ଦିନ ଗଲା, ହେଲା ସଞ୍ଜ, ହେଲା ରାତି
ହଠାତ୍ ଉଠିଲା ତେଜ ଶତ୍ରୁ ପ୍ରତିରକ୍ଷା
ଲାଗିଗଲା ଘମାଘୋଟ ଯୁଦ୍ଧ
ଅଜାଡ଼ିଲେ ଶତ୍ରୁପକ୍ଷ ଟ୍ୟାଙ୍କ୍ ତାଙ୍କ ଗୁଳି
ଅନ୍ଧାର ଆଲୁଅ ହେଲା, ବାରମ୍ବାର ବାରମ୍ବାର
ଫୁଟି ଉଠେ ସହସ୍ରେ ହାବେଳ ମରଣର
ପ୍ରାଣପଣେ ଲଢ଼େ ଶତ୍ରୁ
ଲଢ଼େ ଭାରତୀୟ ସେନା ଟ୍ୟାଙ୍କ୍ ତୋପ ରାଇଫ୍ଲ ଘେନ
ଉପରୁ ସାହାଯ୍ୟ କରେ ଭାରତୀୟ ବିମାନ ବାହିନୀ
ଲଢେ ତାଳେ ପରିତାଳ
ଅସମ୍ଭବ ବୀରତ୍ୱ ଦେଖାଏ
ଭାରତ ଜଓ୍ୱାନ୍
ଶତ୍ରୁର ଉଦ୍ୟମ ପଣ୍ଡ ହେଲା, ଛୁଟିଲା ତାହାର ବଳ
ଆରଦିନ ଉଠେ ସୂର୍ଯ୍ୟ, ଦେଖେ
ଭାରତୀୟ ସୈନ୍ୟ କରିଲେଣି ଘାଟି ଉଁଚେ ବାଁଶ୍ ନଚେ ବାଁଶ୍
ପାହାଡ଼ ଉପରେ
ଖଞ୍ଜିଲେଣି ସେଠି ତୋପ
ପାଦତଳେ ତାର ଚଟାହୋଇ ଲମ୍ବି ଅଛି ସିଆଲ୍‌କୋଟ୍ ସମତଳ
ଉଡ଼ିଲଣି ଭାରତୀୟ ତ୍ରିରଙ୍ଗା ପତାକା
'ସାଇଲି' ଗ୍ରାମେ
ଦକ୍ଷିଣେ ଏଠୁ ସିଆଲ୍‌କୋଟ୍ କ୍ୟାଣ୍ଟନ୍‌ମେଣ୍ଟ
ବାଟ ମାତ୍ର ଦି ମାଇଲ୍ ଦି ଫର୍ଲଂ

କିନ୍ତୁ ସେଠି ଯୁଦ୍ଧ ନୁହେଁ ଶେଷ ଏତିକିରେ,
ନୁହେଁ ତାହା ସିଆଲ୍‌କୋଟ୍ ପତନ,
ଏ ପ୍ରାନ୍ତର ସବୁଠାରୁ ବଡ଼ ଯୁଦ୍ଧ ବାକିଥିଲା ଘଟିବାକୁ
ସିଆଲ୍‌କୋଟ୍‌ର ଦକ୍ଷିଣ ଦିଗରେ, ଫିଲୋର୍‌ରେ,
ସେପ୍ଟେମ୍ବର ନ', ଭାରତୀୟ ଜଓ୍ୱାନ୍ ମର୍ଦ୍ଦାଜ୍‌କେ ନେଲେ
ତା ପରେ ଫିଲୋର ଯୁଦ୍ଧ—

## ୪୦

ଗଲା ମହାଯୁଦ୍ଧ ପରେ
ଘଟିଛି ଯେତେଟି ଯୁଦ୍ଧ ଏଇ ପୃଥିବୀରେ
ତନ୍ମଧ୍ୟରୁ ଅତି ବଡ଼ ଏ ଗୋଟିଏ, ଫିଲୋର !

ଯୁଦ୍ଧ କ୍ଷେତ୍ର ଆୟତନ ସାଢ଼େ ଚାରି ମାଇଲ୍
ଲଢ଼ୁଥିଲେ ବହୁଶତ ଟ୍ୟାଙ୍କ୍, ଦୁଇ ପକ୍ଷ ମିଶି
ଭୟଙ୍କର, ଅତି ଭୟଙ୍କର ।

ଉପରେ ଗରଜେ ପାକିସ୍ଥାନ୍ ବିମାନ, ସେଇ
ଆମେରିକା ଢଙ୍ଆ ସେବରଜେଟ୍, ବାରମ୍ବାର ଆକ୍ରମଣ କରେ,
ତାଠୁଁ ବଳି ପ୍ରତିଆକ୍ରମଣ କରେ ଭାରତୀୟ
ନ୍ୟାଟ୍, ହଣ୍ଟର୍ ଓ ମିଷ୍ଟିର ବିମାନ,
ବିମାନ ବାହିନୀ ରଖେ ସମନ୍ୱୟ
ତଳେ ଲଢ଼ୁଥିବା ଭାରତୀୟ ସୈନ୍ୟ ଥାଟ ସଙ୍ଗେ,

ମୂହୂର୍ତ୍ତେ ମୂହୂର୍ତ୍ତେ ଫୁଟେ ସେଠି ଅପୂର୍ବ ବୀରତ୍ୱ
ଭାରତୀୟ ସେନାମାନେ,
ଯାହା କେବେ ଦେଖା ନାହିଁ ଶୁଣାନାହିଁ
ସେହି ଗୁଳି ବୃଷ୍ଟି ମୃତ୍ୟୁ ବୃଷ୍ଟି ତଳେ
ନିଆଁ ଲଗା ହଜାରେ ପାଉଣ୍ଡିଆ ନେପାମ୍ ବୋମା ବୃଷ୍ଟି ତଳେ
ସ୍ଥିର ଆଉ ଅଟଳ ସାହସେ ଅବଲୀଳାକ୍ରମେ
ଯୁଦ୍ଧକରେ ଭାରତ ଜଓ୍ୱାନ୍
ତଳୁ ମାରି ଖାଲି ଖାଲି ମେସିନ୍ ଗନ୍
ଖସାଏ ସେ ଅତି ଆଧୁନିକ ଅତି ପରାକ୍ରମଶାଳୀ ସେବର୍‌ଜେଟ୍,
ନାନା କୌଶଳରେ
କେବେ ନ ଦେଖିବା ସାହସ ଓ ବୀରତ୍ୱର ଇତିହାସ ଗଢ଼ି
ସେବର୍‌ଜେଟ୍ ଧ୍ୱଂସ କରେ ଭାରତୀୟ ନ୍ୟାଟ୍ ବିମାନ
ନିଜେ କ୍ଷୁଦ୍ର ଓ ଭଙ୍ଗୁର

ଷଏ ଜାଲି ପ୍ୟାଟନ୍ ଟ୍ୟାଙ୍କ୍,
ପ୍ୟାଟନ୍ ଟ୍ୟାଙ୍କ୍, ଆଧୁନିକତମ, ଏକା ଦେହେ ନାନା ଅସ୍ତ୍ର ଗଞ୍ଜା
ତୋପ ଓ କମାଣ, ବିମାନବିଧ୍ୱଂସୀ ତୋପ, ଆଜି କେତେ କଣ
ସତେ ଅବା ଚଳନ୍ତା ମରଣ
ଲକ୍ଷ କରି ତାର ମର୍ମସ୍ଥଳ
ଖାଲି ବନ୍ଧୁକରେ ତାକୁ ଧ୍ୱଂସ କରେ ଭାରତୀୟ ବୀର
ସେ ଏକ ଅପୂର୍ବ ଦୃଶ୍ୟ
ଫିଲ୍ଲୋରର ରଣକ୍ଷେତ୍ର ହେଲା ପ୍ୟାଟନ୍ ଟ୍ୟାଙ୍କ୍ ମଶାଣି
ଇସ୍ପାତ୍‌ରେ ଗଢ଼ା ଦେହ ହେଲା ଖାଲି ଲୁହାର ଅଙ୍ଗାର
ଚୌଦ ଦିନ ଯୁଦ୍ଧ ଶେଷ
ଯୁଦ୍ଧ ଭୂମି ହେଲା ଶୂନ୍‌ଶାନ୍

ବିଜୟ ହାସଲ ହେଲା ଭାରତର
ଶହେ ଏକାଅଶୀ ଶତ୍ରୁ ଟ୍ୟାଙ୍କ୍ ଧ୍ୱଂସ ହେଲା
ଛତିଶଟା ଟ୍ୟାଙ୍କ୍ ଜୀଅନ୍ତା ପଡ଼ିଲା ଧରା
ଶହ ଶହ ହଜାର ହଜାର ଶତ୍ରୁ ସୈନ୍ୟ ଗଲେ ମରି
ବନ୍ଦୀ ହେଲେ ଆଜି କେତେ
ଗାଡ଼ି ବନ୍ଧୁକ ଗୁଳି ଗୁଳା ସହ ।
ଜଳିଗଲା କେତେ କେତେ ଶତ୍ରୁର ବିମାନ
ଏଇ ସେହି ଚାୱିଣ୍ଡା ସେକ୍ଟର, ଘମାଘୋଟ ରଣସ୍ଥଳୀ ।

ସେ ଯେଉଁ ପ୍ରବଳ ଯୁଦ୍ଧ
ସେହି ଯେଉଁ ବୁଦ୍ଧି ଆଉ ସାହସର, ରଣ କୌଶଳର
ଅପୂର୍ବ ପରୀକ୍ଷା !
ଚାରିପଟେ ସେଠି ମୃତ୍ୟୁ, ମୃତ୍ୟୁ ଅଛି ପବନରେ
ପ୍ରତି ନିଶ୍ୱାସରେ, ଆଖି ପଲକେ ପଲକେ,
ନୁହେଁ ଖାଲି ମୁହୂର୍ତ୍ତକେ ସଂସାର ଛାଡ଼ିବା, ପତ୍ର ଯେଉଁପରି
ଶୁଖି ଝଡ଼ିପଡ଼େ ଡାଳୁଁ,

ଏ ମୃତ୍ୟୁ ତ ଭୟଙ୍କର, ବିଭୀଷିକାମୟ,
ମଣିଷର ପ୍ରତ୍ୟେକ ଇନ୍ଦ୍ରିୟ, ପ୍ରତି ସ୍ନାୟୁ, ଯନ୍ତ୍ରଣାରେ ହୁଏ ବିକ୍ଷୋଭିତ,
ଏଇ ଯେଉଁ ସୁକୁମାର ମଣିଷ ଶରୀର ଛଟପଟ ହୁଏ ପାଦେ
ପଶିଗଲେ କଣ୍ଟା,

ପଡ଼ିଲେ ଆଖିରେ ଧୂଳିବୁନ୍ଦା,
ଛୁଇଁ ହୋଇଗଲେ କେବେ ବିଆପିଲା କାଠି, ଟିପ ଅଗେ,
ଝୁଣ୍ଟି ପଡ଼ି କାନ୍ଦି, ଉଠିଗଲେ ଟିକିଏ ନଖ,
ଖରା ଆଉ ବରଷାକୁ ଟେକେ ଛତା ଶୀତହେଲେ ଖୋଜେ
ଘୋଡ଼ହେଲା,

ଏଇ ଯାହାକୁ, ଚମୁଟିଲେ କାଟେ,
ସେହି ତ ସେହି ଶରୀର ଯେ ମୁହାଁଏ ଆପଣାକୁ ହାଣକାଟ ଗୁଳିମାଡ଼
ବୋମାମାଡ଼ ପୋଡ଼ାଜଳା ଯେତେ ଯାହା ସବୁ,
ଛାଡ଼ିଯାଉଥାଉ ପଛେ ଦେହୁଁ ଫଡ଼ା ଫଡ଼ା, ବୋହୁଥାଉ
ରକ୍ତ ଝରଝର,

ସୁକୁ ସୁକୁ ହେଉ ପ୍ରାଣ,
ତଥାପି ଆଗେଇବାକୁ ଦୃଢ଼ ସାହସରେ ଶତ୍ରୁ ମୁହାଁ
ଠିଆହୋଇ ଅବା ଧୂସୁରି ଧୂସୁରି,
ଥାଉ ଏକ ହାତ ଅବା ଦୁଇ
ଫୁଟୁ ଅବା ଫାଳେ ଦେହ
ଲମ୍ବୁଥାଉ ପଛେ ଚିରା ପେଟୁଁ ଅନ୍ତବୁଜଳା
ଶେଷ ନିଶ୍ୱାସ ଶେଷ ରକ୍ତ ଦେହେ ଥାଉଁ
ମାରିବାକୁ ଶେଷ ଗୁଳି,
ଆଖି ବୁଜିବା ଆଗରୁ ମାରିବାକୁ ଶେଷ ବ୍ଲେଟ ଶତ୍ରୁର ଛାତିରେ,

ନାହିଁ ସେଠି ହାଇଁପାଇଁ
ଏ ଜୀବନ ଥିଲା କି ସୁନ୍ଦର, କି ଆନନ୍ଦ, କି ପ୍ରାଚୁର୍ଯ୍ୟ ଏଥି,
ମା ବାପ ଘରଣୀ ଓ ଭାଇ ଭଉଣୀ ଓ ପୁଅ ଝିଅ ବନ୍ଧୁ
ସ୍ନେହୀଜନମାନେ, ଆଉ ଯେତେ ସହକର୍ମୀ ।

ଗୋଟେ ଘର ଶାନ୍ତ ଆନନ୍ଦର, ଅପେକ୍ଷା କରିଚ,
ବକଟେ ବଗିଚ୍ଛ, ସେଠି ସେ ଚଢ଼େଇ, ଫୁଲ,
ପୋଷା କୁକୁରଟି,

ଆପଣାର 'ହବି' କେତେ, ଆଦରର ବଂଶୀ ବା କ୍ୟାମେରା,
ଖେଳପଡ଼ିଆ କ ଫୁଲକା, ସଭାଘର,
ଆପଣା ଡାଇରି ଲେଖା, ନାନା ସାତ ପାଞ୍ଚ ସ୍ୱପ୍ନ ଓ ଯୋଜନା
ପାଇବାର, ଧରି ରଖିବାର, ଗଢ଼ିବାର, ବଢ଼ିବାର
ମନ ସୁଖେ

ମନେ ପଡ଼େ ନାଇଁ
ସେ ଯୁଦ୍ଧ ଭୂଇଁରେ ସାଇଁ ସାଇଁ ଗୁଲେ ଯେତେବେଳେ ଗୁଳି
କାନପାଖେ ମୁଣ୍ଡପାଖେ ଦେହ ଘଷି ହେଲାପରି
ଯେତେବେଳେ ବୋମା ଫାଟେ ଗୋଟା ପରେ ଗୋଟା
ପ୍ରଳୟ ଗର୍ଜନେ

ଭୂଇଁ ଥରେ ଡାଳେ ମଡ଼ମଡ଼ କଟକଟ
ଖୁରକାନ ସୁ ସୁ ଉଡ଼େ ଖୁରଧାର ସ୍ପ୍ଲିନ୍‌ଟର୍
ପାଖେ ପାଖେ ଟଳିପଡ଼େ ସାଥୀ ଯନ୍ତ୍ରଣାରେ ହୁଏ ସେ ଢୁଂଗାଳ
ଯେତେବେଳେ ପଡ଼୍‌ଥାଏ ତାର ତାର ଉପରେ
ଭୁହାଇ ଭୁହାଇ ବୋମା, ତୋପ ଗୁଳି, ମେସିନ୍‌ଗନ୍ ଆଉ
ଶକ୍‌ଏଲ୍‌ଲେସ୍ ରାଇଫଲ୍ ଗୁଳି
ଦେଖୁଥାଏ ଆଖି
ଶୁଣୁଥାଏ କାନ

ଅନ୍ଧାର ଧୂଆଁମୟ ପୃଥ୍ୱୀ, ଦଂଶନାଙ୍କି କଏ ଅଛୁ କାନ୍ଦି
ଖାଲି ଅନବରତ କାନ ଫଟା ସୃଷ୍ଟି ଉଜୁଡ଼ା ପ୍ରଳୟ ଶବଦ
ରକ୍ତ ପାଣିକର, ଶେଲ୍‌ମାନଙ୍କର ସିଟି, ମେସିନ୍‌ଗନ୍‌ର ଫଟ୍‌ଫଟ୍
ସତେ ଅବା ଗୋଟାଏ ଜଂଗଲ ଝଣ ଝଟେ କୁଆପଥରର
ଟପରେ ଟପରେ
ତୋପ ଓ ବୋମାର କାନଫଟା ବିସ୍ଫୋରଣ ଲାଗିଲାରି

ଯେତେ ଅବା ହୃଷ୍ଟ ବୃଦ୍ଧ ଜଳଧି ପିଠୁରେ ତା ତେଜ ଅସୁମାର
ଉଡ଼ାଜାହାଜମାନଙ୍କ ଘର୍ଘର ଝଣଝଣ
ଏକା ସଙ୍ଗେ ସବୁ ବଜ୍ର ସବୁ ବାଘ ସବୁ ଚିଲ ଶାରୁଗୁଣା ଅବା
ଛାଡ଼ୁଥାନ୍ତି ରଡ଼

ଦିଶୁଥାଏ ଆଖିଆଗେ କଳା ଆଉ ନାଲି ନାନା ନଈ ନାନା ସୁଅ
କେଉଁଆଡ଼ୁ ଆସେ କାହା ସଙ୍ଗେ କଏ ମିଶେ କୁଆଡ଼େ ସେ ଯାଏ
ସେହି ବହ୍ନିଶିଖା ତଳେ
ଆପଣାକୁ କରି ସମର୍ପଣ ରଣଚଣ୍ଡୀ ପଦତଳେ
ଅବା ଯେ ଗଢ଼ିଛି ଦିନରାତି ସୂର୍ଯ୍ୟ ଚନ୍ଦ୍ର ସୃଷ୍ଟି, ତାଙ୍କୁ
ହୃଦେ ଧରି ସ୍ୱଦେଶ ଜନନୀ ପ୍ରତି ଅନୁରକ୍ତି
ଯେହି ଯେଉଁ ବୀର
ଯୋଦ୍ଧା
ଜୱାନ୍
ମଣିଷ

ମାଡ଼ିଚାଲେ ହୋଇ ଆଗୁସାର
ସୁଶୃଙ୍ଖଳ ସେନାନୀ ଥାଟରେ କରି ଆପଣା କର୍ତ୍ତବ୍ୟ
ତାର ଦେହ ଯାଉ, ଅବା ଥାଉ,
ସେ ନମସ୍ୟ, ମୃତ୍ୟୁଞ୍ଜୟ
ତା ଦେଶର ଶ୍ରେଷ୍ଠତମ ଗର୍ବ, ଶ୍ରେଷ୍ଠତମ କଳା
ଆପଣା ଧମନୀ ରକ୍ତରେ ଲେଖେ ଆପଣାର ଯଶୋଗାଥା
ସେ ଭାଷା ବୁଝିବ ଖାଲି ଅନାଦି ଅନନ୍ତ ଅନ୍ତରୀକ୍ଷ ସର୍ବଦ୍ରଷ୍ଟା ସ୍ରଷ୍ଟା

ତେଣୁ ଯୁଦ୍ଧଭୂମି
ସେହି ଯାହା, ମରଣର ଖଳା
ସେହି ପୁଣି ପୁଣ୍ୟ କୁରୁକ୍ଷେତ୍ର
ଧର୍ମକ୍ଷେତ୍ର
ଯୁଗେ ଯୁଗେ ।

୫୧

ଯୁଦ୍ଧ ପଚ୍ଛପଟରେ
ବଙ୍ଗାଳ ଦେଶରେ
ଖୁଲେ ନଟ୍ୟ ହସ କାନ୍ଦ ସୁଖ ଦୁଃଖର ଜୀବନ, ପୂର୍ବପର,
ଚକ୍ଷୁ ଅକ୍ଷେ ଆଜ କକ୍ଷେ
ସୂର୍ଯ୍ୟ ଉର୍ଦ୍ଧେ, ଝଲଝଲ କରେ ଦୃଶ୍ୟ, ବର୍ଷାଧୂଆ ଶାଗୁଆ
କଆର, ଗଛ

କଏ ରଖେ ତା ଶାଗୁଆ ଅଭୁଟ ଓ ସୁସ୍ଥ ?
ସେଇ ଜଓ୍ୱାନ୍, ବୀର ଜଓ୍ୱାନ୍ ।

ବଗିଚ୍ଚରେ ଝୁଲେ ବାଇଗଣ, କଅଁଳ ଛନଛନଆଁ,
ଗାଈ ଦୁହାଁ ହୁଏ, ଫେଣ ଉଠେ ଠେକ ଉଚ୍ଛୁଳାଇ,
ଲଗେ ଘର ଓଳଆର ଝପର ଝପର, ଚୂଲରୁ ପାଉଁଶ କଢ଼ା,
ମନ୍ତ୍ର ପଢ଼ି ପଢ଼ି, ନଠେଇ ନଠେଇ ଦେହହାତ ରଗଡ଼ ରଗଡ଼
ପୋଖରୀ ଗାଧୁଆ
ଅବା ଗପ—"ଶୁଣିଲଣି ଆଜ୍ଞା !"

ଘରେ ଘରେ ରୋଷେଇର ଚେମାନଳ ଜଳେ,
ମା, ଭଉଣୀ, ଘରଜା ଲଗିଯାନ୍ତି ପଣକ ଉପରେ, ଶିଳପାଖେ
ଶୁଭେ ପାନ ଭଙ୍ଗା ପାଖେ ଗୁଆକଟା ଖଟର ଖଟର
ପୋଖରୀରେ ପଡ଼େ ଖେପା ଜାଲ,
କଏ ବସି ଜଆ ଗୁଣ୍ଠି ଗୁଣ୍ଠି ଧୀରେ ସୁସ୍ଥେ ପକାଏ ବନଶୀ
ଗଉଡ଼ଆ ଗୋରୁ ମେଲଦେଇ ଛୁଡ଼ଦଏ ସ୍ୱର,
କଏ ଆସେ ମୁଣ୍ଡେ ବୋଝ ଗୋରୁ ପାଇଁ ଘାସ,
ବିଲରେ ଲଗିଚ୍ଛି ଚାଷ ନୂଆ ବଲ ଖଣ୍ଡେ ହେଉଅଚ୍ଛି ହଳ,
ଆଜ ଯେତେ ଶସ୍ୟ କଟା ମାଣ୍ଡିଆ କ କାଙ୍ଗୁ
ଅଖୁ ଅବା ଝୋଟ
ସଡ଼କ ଉପରେ, ପଡ଼ୁଅଚ୍ଛି ମାଟି, ଲଗିଛନ୍ତି ଧନମଜୁରଆ,

ଚାଲିଛି ଶଗଡ଼ ପଛେ ଶଗଡ଼ର ଧାର
ଲମ୍ବ ହୋଇ ଶୋଇପଡ଼ିଅଛି ଶଗଡ଼ିଆ
ଚାହାଳକୁ ଶୁଭୁଅଛି ବେଳ କ ଆକାରେ ବା,
ସହରରେ ଲାଗିଅଛି ବଜାକଣା
ଧଡ଼ପାଞ୍ଚ ସବୁଜନ ଘର ଡାକ ଘୁଞ୍ଚେ
"ଲିଅ ଲଟରଜନ୍ମି ଟଙ୍କାରେ ଟେନ୍‌ସର୍ ସରଲାଳ ସରଗନ୍ନ —"
ଖୋଲି ଅଛି ଦୋକାନ ବଜାର, ପଡ଼ିକରେ ଦୂର୍ବଘର ଛଡ଼,
ଟ୍ରକ୍, ରିକ୍ସା, ଶଗଡ଼, କାର୍, ଠେଲାଗାଡ଼ି, ପଦଯାତ୍ରୀ,
ଚାଲିଛି ରେଲ୍‌ଗାଡ଼ି ଛପା ଟାଇମ୍ ଟେବୁଲ୍ ଅନୁଯାୟୀ
ଡାକବାକଟେଠିଦିଏ, ଖବରକାଗଜବାଲା ଆଣିଦିଏ କାଗଜ,
ନବ୍ୟମିତଙ୍କ ଚାଲିଛି ଇସ୍କୁଲ, କଲେଜ, ଫୁଟବଲ ମ୍ୟାଚ୍
ଦଫତର ଅଫିସ ଓ ସରକାରୀ ଶାସନ, ଆସେମ୍ବ୍ଲି ଓ ଲୋକ ସଭା,
ଖୋଲିଅଛି ଡାକ୍ତରଖାନା, ଶୋଇଅଛି ରୋଗୀ ଖଟେ,
ଚାଲିଛି ଯେତେ ଉଷା ବାର, ପୁଣ୍ୟ ପର୍ବ,
ତୀର୍ଥ, ଠାକୁର ଓ ସାଧୁ ଦର୍ଶନ ଗହଳି, ଦେଉଳରେ ଘଣ୍ଟାରୋଳ,
ମଠ ଆଉ ଭାଗବତ ଘରେ, ସଂକୀର୍ତ୍ତନ,
ସିନେମା, ଥିଏଟର, ନାଚଘର, ସବୁ ଖୋଲା,
ଚାଲିଛି କଳକାରଖାନା, ସିଫ୍ଟ ପରେ ସିଫ୍ଟ,
ଖଟୁଛନ୍ତି ହଜାର ହଜାର ଶ୍ରମିକ

ଯାହାଥିଲା ସବୁଅଛି ସେହିପରି, କିଛି ନୁହେଁ କ୍ଷୁଣ୍ଣ ଅବା ସଙ୍କୁଚିତ,
କାହାଘରେ ହୁଏ ବାହାଘର, କାହାର ଚାଲିଛି ନୂଆ ଘର ତୋଳା,
କାହାଘରେ ପିଲା ଡାକେ କୁଆଁ କୁଆଁ,
ହେଇ ଶୁଭେ ଦୁଇ ସାନ ପିଲା ପିଟନ୍ତି କ୍ୟାରମ୍
କିଏ ନେବ କ୍ୱିନ୍ ?

ସିତାର୍ ବଜାଇ ସାଧୁଅଛି ଜଣା, କେଉଁ ଯାନଷ୍ଟିଅ,
କିଏ ରଖେ ଏ ଦେଶର ଅନ୍ତ ଆଉ କାନ୍ତ ସ୍ଥିର
ତା ଜନଜୀବନର ସ୍ୱାଭାବିକ ସୁସ୍ଥଗତି,

ତା'ର ନବ୍ୟସତ୍ତ୍ୱ, ମାନ, ଜୀବନ ଓ ଧନ
ଯେତେ ଯାହା ତାର ରୁଚି ଓ ଅଭ୍ୟାସ
ସେ ସେହି ସୁରକ୍ଷାସ୍ତ ସେନା,
ଜଓ୍ୱାନ୍,

କଏ ଠିଆହୁଏ ସ୍ଥଳଭୂମେ, କଏ ଉଡ଼େ ଆକାଶରେ,
କଏ ଥାଏ ନୌସେନାରେ ସମୁଦ୍ର ଉପରେ
ସେହି ସେ ଏ ସ୍ୱାଧୀନ ଦେଶର ବଜ୍ର ଶକ୍ତି,
ଶତ୍ରୁକୁ ଆଗୁଳ
ଆଜି ଘର ଜଗା ସିଂହ
ତାହାର ହିଁ ବାହା ବଳ ରଖଇ ଅଟଳ
ଏ ଦେଶର ଭିତ୍ତି ଆଉ ମୁକ୍ତି
ସେହି ସେ ବଂଶୁଏ
ଏ ଦେଶର ପ୍ରତି ମଣିଷକୁ ଧ୍ୱଂସ ଆଉ ମାରଣ ଦାଉରୁ
ନିଜେ ହୋଇ ଶତ୍ରୁ ପ୍ରତି ବିସ୍ଫୋଟିକା, ଦିଏ ତା ଦେଶକୁ ଅଭୟ ଓ
ସୁସ୍ଥି
ଅନନ୍ଦ ଓ ଶାନ୍ତି,

ଛୁଟି ବିଶ୍ରାମ ଓ ସାଂସାରିକ ସୁଖ, ଯେତେ ଯାହା ଅଛି
ରହି ରାତି ରାତି ଦିନ ଦିନ ଉଜାଗର
ପଦେ ପଦେ ନିଜ ଜୀବନକୁ କରି ସେ ବିପନ୍ନ
କରି ଯେତେ ଶ୍ରମ ସହି ଯେତେକ ଯନ୍ତ୍ରଣା
ଅକାତରେ ଢାଳିଦେଇ ଆପଣା ଶୋଣିତ
କେବେ ଅବା ଢାଳିଦେଇ ଅମୂଲ୍ୟ ଜୀବନ
ଗଜା ବଅସରେ ।

ସେ ସେବା ଓ ସେ ତ୍ୟାଗର
ମୂଲ୍ୟ ନାହିଁ,
ସେହି ଅକୁଣ୍ଠିତ, ଆବେଗ ପୂରିତ, ରକ୍ତ ଆଉ ଜୀବନର
ନୈବେଦ୍ୟ ଦେଇ

ଦେଶ ଜନନୀର ପୂଜା କରିବାରି
ନାହିଁ କାହିଁ ପଟାନ୍ତର

"ଭାରତ ମାତା କୀ ଜୟ !" ମାନେ କ'ଣ, ଆଗ ବୁଝେ ସେମାନେ,
ରଣଭୂମି ପରେ ଥାଇ, ଧରି ପ୍ରହରଣ,
ମାଟିରେ କି ଆକାଶରେ କିବା ଦରିଆରେ
ଦିବ୍ୟ ଦୃଷ୍ଟି ବଳେ, ପରିପୂର୍ଣ୍ଣ ବିଶାଳ ହୃଦୟେ,
ଉଦ୍‌ବେଳିତ ପ୍ରାଣ ପ୍ରାଚୁର୍ଯ୍ୟରେ

ଏକ ହୁଏ ଚେତନାରେ ଏ ଦେଶର ପ୍ରତି ଧୂଳିକଣା ସଙ୍ଗେ,
ହୁଏ ଏକ ଓ ଅଭେଦ୍ୟ,
ବୁଝେ ଏ ଜୀବନ କ'ଣ, ଦେଶ କ'ଣ, ଦେଶପ୍ରୀତି କି ପଦାର୍ଥ,
ଯୁଦ୍ଧ କ'ଣ, ଶାନ୍ତି କ'ଣ,

ସେ ଏ ଦେଶକୁ ପାଉଛି,
ନିଜେ ସେଠି ନ ପଡ଼େ ତା' ଛାଇ,
ସେ ନ ଖୋଜେ ନିଜପାଇଁ ଲାଭ ଅବା ଶୁଭ, ସୁଖ୍ତି ନିରାପତ୍ତା
ସେ ଖାଲି
ଭାରତମାତାର ବୀରପୁତ୍ର,
ଗଛର ଫୁଲ
ଦୁଧର ସର
ପିଣ୍ଡର ଜୀବନୀ ଶକ୍ତି
ଜଓ୍ୱାନ୍ ।

ସେଦିନ ସେପ୍‌ଟେମ୍ବର ଆଠ, ପାହାନ୍ତିଆ ବେଳ
ରାଜସ୍ଥାନେ ଭାରତୀୟ ସୀମାରେଖା ଡେଇଁ
ଯୋଧପୁରଠୁଁ ଶହେ ମାଇଲ୍ ଦକ୍ଷିଣ ପଶ୍ଚିମେ ଅଛି
ଯେଉଁ ବାମେର ସହର
ସେଦିନ ବାଟେ

ସୀମାରେଖାଠାରୁ ପଶ୍ଚିମକୁ ପାଞ୍ଚ ମାଇଲ୍ ଦୂର ଗାଦ୍ରା ସହର
ଶତ୍ରୁ ଭୂଇଁ କରି ଅଧିକାର
ମାଡ଼ିଲେ ଭାରତ ସେନା ଗୋରଖ୍‌ପୁର ଆଡ଼େ
ପାକିସ୍ଥାନର ସିନ୍ଧ୍‌ର ସହର ହାଇଦରାବାଦ୍ ସେଠୁ ମୋଟେ
ପନ୍ଦର ମାଇଲ୍
ବାଲିଏ ବାଲିଏ ବାଟ ସତୁରି ମାଇଲ୍ ଆଉ ପଶ୍ଚିମକୁ
କରାଚି
ଶତ୍ରୁ ଦେଶର ବୃହତ୍ତମ ନଗର ଓ ନୌବନ୍ଦର
ଓ ବିମାନଘାଟି ।

ସେଇଦ୍ର ରଣାଙ୍ଗନ, ବିଖ୍ୟାତ ଏ ଯୁଦ୍ଧେ
ବାମେଁର୍ ଓ ଗାଦ୍ରା ସେକ୍‌ଟର ବୋଲି ।

ବାରମ୍ବାର ବାରମ୍ବାର ଶତ୍ରୁ କରେ ଆକ୍ରମଣ
ସବୁ ବଳ ଠୁଳ କରି
ନ ପାରେ ସେ ପେଲି ଭଲେ ହେଲେ
ବୃଥା ଉଡ଼େ ତା ଉଡ଼ାଜାହାଜ ମାରୁଥାଏ ବୋମା
ବୋମ୍ବ ବୋମ୍ବ
ରାଜସ୍ଥାନ୍ ଗୁଜୁରାଟ ପଞ୍ଜାବ ଓ କାଶ୍ମୀରର
ସହର ଉପରେ,
ହତ୍ୟାକରେ ନିରୀହ ମଣିଷ
ସହରର ଅଳିଡ଼ୁଆ ବସ୍ତିବାଲା
ଅବା ଗ୍ରାମବାସୀ କୃଷୀ

ମାଡ଼ିଗଲେ ଭାରତୀୟ ସେନା,
କରାଚି ସହର କମ୍ପେ ଆତଙ୍କରେ
ବାଟଘାଟ ବନ୍ଦ କରି କେତେ ଯେ ପଳାନ୍ତି
କିବା ପାକିସ୍ଥାନୀ କି ଅବା ବିଦେଶୀ
ନାହିଁ ତା କଳନା

ନ କରେ ଭାରତ ବୋମାମାଡ଼ କରାଚି ସହର ଉପରେ
ମନ କଲେ ପାରିଥାନ୍ତା,
ନ ନିଏ ସେ ସିନ୍ଧ୍ ହାଇଦରାବାଦ୍, ତା ମଧ୍ୟ ସମ୍ଭବ ଥିଲା,
ତା ଯୁଦ୍ଧ ଉଦ୍ଦେଶ୍ୟ ନୁହେଁ ଦଖଲ କରିବା ଶତ୍ରୁର କେଉଁ ସହର
ଦେଶ ଜୟ ପାଇଁ
ଅଥବା ହତ୍ୟା କରିବା ନିରୀହ ମଣିଷ
ଡାକ ହାକ କରିଥିଲା ସେ ଘୋଷଣା
ପାକିସ୍ଥାନ୍‌ବାସୀ ନୁହଁନ୍ତି ଶତ୍ରୁ ଆମର, ଆମେ ତାଙ୍କ ଭଲ ଚାହୁଁ,
ପାକିସ୍ଥାନ୍ ଜନତା ସଙ୍ଗେ ନାହିଁ ଆମ କଳି କିଛି
ଆମର ଲକ୍ଷ୍ୟ—ଭାଙ୍ଗି ଦେବା ତା ଯୁଦ୍ଧ-ମେସିନ୍, ଆଉ କିଛି ନୁହେଁ ।

ଛେଣୁ, ବାର୍ମେର୍-ଗାଦ୍ରା ପଟେ, ଭାରତୀୟ ସେନା
ବେଶି ଦୂର ନ ଆଗେଇ ଆଉ
ଶତ୍ରୁକୁ ବ୍ୟାପୃତ ରଖେ ଘୋର ଯୁଦ୍ଧେ
ଆନ ଆଡ଼େ ଯିବାକୁ ନ ଦିଏ
ବାରମ୍ବାର ରକେଟ ହାଣେ ଶତ୍ରୁର ସୈନ୍ୟ ଓ ଟ୍ୟାଙ୍କ ଉପରେ
ଯେତେଥର ଧାଇଁ ଆସେ ଶତ୍ରୁ,
କେତେବେଳେ ବନ୍ଦୀକରେ ଟ୍ୟାଙ୍କ୍ ଓ ସଇନ
ଦୃଢ଼ କରେ ଆପଣା ଆସନ ।

### ୪୨

ଯେଉଁ ମୁହୂର୍ତ୍ତରେ
ଭାରତୀୟ ସେନା
ପାକିସ୍ଥାନୀ ଶତ୍ରୁ ବିରୁଦ୍ଧରେ
କଲା ଅଭିଯାନ
ଭାରତ ବିମାନ ସେନା ଆକ୍ରମଣ କଲେ ଶତ୍ରୁପକ୍ଷ ରଣଘାଟିମାନ,
ତା'ର ବିମାନଘାଟି,
ଅସ୍ତ୍ର ସଜାସଜ ଯେତେ ଗଡ଼,

ଯେତେ ଅସ୍ତ୍ରଶସ୍ତ୍ର ଗନ୍ତାଘର
ଅସ୍ତ୍ରଶସ୍ତ୍ର ସୈନ୍ୟ ଆଉ ପ୍ୟାଟନ୍ ଟ୍ୟାଙ୍କ୍ ବୁଢା ରେଳଗାଡ଼ି
ତା'ର ପେଟ୍ରୋଲ୍ ଟାଙ୍କିମାନ
ପୁଣି ତା ବିମାନ
ନାନା ସ୍ଥାନେ ତା ସୈନ୍ୟ ଛାଉଣୀ
ଗୋଟି ଗୋଟି କରି ଧ୍ୱଂସକଲେ ତା' ଚକ୍ଷାକବଚମାନ
ଆଇ. ଏ. ଏଫ୍. ଶତ୍ରୁର ଆତଙ୍କ, ତା'ର ଅବିରତ ଜାଗ୍ରତ ଦୁଃସ୍ୱପ୍ନ ।
ଶତ୍ରୁପକ୍ଷ ଦେଖୁ ଦେଖୁ ମଜବାଜ ବାନ୍ଧି ବାନ୍ଧି ପଗଡ଼ି
ମେଲୁ ମେଲୁ ଡେଣା
ଉଡ଼ିଆସି ତାକୁ ବିଧ୍ୱସ୍ତ ଓ ବିପର୍ଯ୍ୟସ୍ତ କରେ ଭାରତ ବିମାନ
ନ୍ୟାଟ୍, ହଣ୍ଟର୍, ମିଷ୍ଟର୍ କ୍ୟାନ୍‌ବେରା ।

ଅସୀମ ସାହସ ତା'ର ମନେ ଅବା ସ୍ୱୟଂ ସେ ଗରୁଡ଼, ପକ୍ଷୀରାଜ,
ଲକ୍ଷ୍ୟ ତା'ର କେବେ ଫିଟେ ନାହିଁ
ଅବଲୀଳାକ୍ରମେ ଆକାଶରେ ଉଡ଼େ ବୁଲେ ଘୂରେ ଶାଳମାରେ
ରକ୍ଷାକରେ ତା ଦେଶକୁ ଗୁଳିମାରି ଧ୍ୱଂସ କରି
ଅବା ତଡ଼ିନେଇ ବାରମ୍ବାର ଶତ୍ରୁର ମାରଣା ବିମାନ ଦଳ,
ବାରମ୍ବାର ଆକାଶରୁ ହୁଏ ସାହାଯ୍ୟ ରଣକ୍ଷେତ୍ରେ
ଭାରତ ସେନାର ଆଗିଆଣି ସ୍ଥଳବାହିନୀକୁ
ମେଣ୍ଟ ସହଯୋଗ ସମନ୍ୱୟ
ତଳର ସିଂହବାହିନୀ ସହିତ ଉପରର ଗରୁଡ଼ ବାହିନୀର
ଭୂଲୋକ ସହିତ ଖ-ଲୋକର
ସତେ ଅବା ପୃଥିବୀରେ ଅଦ୍ୱିତୀୟ
ସେହି କଲା ଭାରତ ସେନାକୁ ସମରେ ଅଜେୟ ନିତ୍ୟବିଜୟୀ ।

୫୩

ଦୁରାଶା ପୋଷିଥିଲା ପାକିସ୍ଥାନ ଭାରତ ବିଜୟ ଲାଗି
ଆରମ୍ଭ ହେଲା ତ ଅଭିଯାନ ସେପଟେମ୍ବର ଛ' ତାରିଖ ଦିନ

ବୋମା ମାଡ଼କଲ ଗୁଜୁରାଟେ ଶତ୍ରୁ ଘାଟିପରେ,
ପେଟ୍ରୋଲ୍‌ବାହି ରେଳଗାଡ଼ ଜାଳିଲ ଓ୍ୱାକରସ୍ଥାନେ

ସେପ୍‌ଟେମ୍ବର ସାତ ରାତି, ଭାରତ ବିମାନଦଳ ବୋମା ବାଡ଼େଇଲେ
ଉଡ଼ି ପାକିସ୍ଥାନ୍ ରାଜଧାନୀ ରାଓ୍ୱଲ୍‌ପିଣ୍ଡି ପାଖ
ଚକ୍-ଲାଲ ବିମାନଘାଟି
ଆଉ ଏଂକ ଅଭେଦ୍ୟ ସାରଗୋଦା ଘାଟି
ଲାହୋରଠୁଁ ଶହେ ମାଇଲ୍ ପୂର୍ବକୁ
ସେପ୍‌ଟେମ୍ବର ସାତ, ପାହାନ୍ତିଆ ସାଢ଼େ ଛ' ବଜେ
ପୁଣି ଆଉ ଦୁଇଥର ଛଅ ଘଣ୍ଟା ପରେ
ବୋମା ଭର ହେଲ ପାକିସ୍ଥାନ ସେବର୍‌ମାନ
ଆସିଥିଲେ ବୋମିବାକୁ ଖଡ଼ଗପୁର ପାଖ
କଲେଇକୋଣ୍ଡା ବିମାନଘାଟି,
ଭାରତୀୟ ବିମାନ
ଧ୍ୱଂସ କଲେ ତିନୋଟା ସେଥିରୁ ହେଲେ ତାଙ୍କୁ ଘଉଡ଼ାଇ,
ପଞ୍ଜାବର ହାଲ୍‌ଓ୍ୱାର ବିମାନ ଘାଟି ଆକ୍ରମଣ କରେ ଜେଟ୍
ହେଲେ ଘଉଡ଼ାଇ ଭାରତ ବିମାନ ତାଂକୁ,
ଚୂରଖଣ୍ଡ ଜେଟ୍ ହେଲେ ଜାଳ,
ସେହିଦିନୁଁ ପାକ୍ ଦିନବେଳେ ନ ଭରସେ ଉଡ଼ିବାକୁ
ଭାରତ ଆକାଶେ
ବାରମ୍ବାର ବାରମ୍ବାର ପଣ୍ଡ କଲେ ଶତ୍ରୁର ଶତ ଚେଷ୍ଟା
ବୋମିବାକୁ ଭାରତର ବନ୍ଦର, ନଗରମାନ, ଶିଳ୍ପସ୍ଥଳ, ଯୁଦ୍ଧଘାଟି
କାହିଁ ବିଶାଖାପାଟଣା ବନ୍ଦର,
କାହିଁ କଲିକତା, ରାଜଧାନୀ ଦିଲ୍ଲୀ, ବମ୍ବେ ନାନା ସ୍ଥାନ,

ଆସୁ ଆସୁ ଶତ୍ରୁର ବିମାନ, ଦେଖିପାଆନ୍ତି ଭାରତୀୟ ନ୍ୟାଟ୍
ନାନାବିଧ କୌଶଳେ, ଅତି ବୀର ଦର୍ପେ
ଅତି ପାଖୁ ମାରନ୍ତି ସେ ଗୁଳି,

ପଛି ଥାଇ ତେଣା କଟା ହେଲା ପରେ
ସୀମାରେଖା କଡ଼ ଗୁଡ଼
ନ ଆସଇ ପାକସ୍ଥାନ୍ ଶାଗୁଣା,
ଯେବେ ଆସେ ଛପି ଛପି ନଶି ଅନ୍ଧାରରେ
ଜାଳବାକୁ ଗାଁଗଣ୍ଡା ।

ସୁଟଲେମାନ୍‌କ କେନାଲ୍ ହେଡ୍‌ଓ୍ୱକସ୍, ଡ଼େର ବାବା ନାନକ୍,
ପେଶାଓ୍ୱାର୍, କୋହାଟ୍, ପିଣ୍ଡି ଓ ଲାହୋର, ସିଆଲ୍‌କୋଟ୍,
ବାଡ଼ନ ଗଡ଼ାର ଘାଟି, ସାର୍ଗୋଦା,
ଶତ୍ରୁ ଦେଶର ନାନା ଯୁଦ୍ଧଘାଟି, ପ୍ରତି ରଣାଙ୍ଗନେ
ଆଇ. ଏ. ଏଫ୍. ଦେଖାଇଲା କୀର୍ତ୍ତି
ଧ୍ୱଂସ କରି ଶତ୍ରୁର ପ୍ରତିରକ୍ଷା କ ଆକ୍ରମଣର
ହାତ ଗୋଡ଼ ଚେର ମୂଳ,
ଶତ୍ରୁ ହେଲା ଖିନ୍ନ ଭିନ୍ନ ବ୍ୟଥିତ ବ୍ୟାକୁଳ ପାଗଳ,
ଜଗତ ଗାଇଲା ଭାରତୀୟ ବମାନ ବାହିନୀର
କୌଶଳ, ବୁଦ୍ଧି, ବୀରତ୍ୱ, ସାହସ ଓ ଅବ୍ୟର୍ଥ ଲକ୍ଷ୍ୟର
ଅକ୍ଷୟ କୀର୍ତ୍ତିର ଗାଥା ।

ନଥିଲା ତାହାର ଅତି ଆଧୁନିକ ବୈଜ୍ଞାନିକ ଯନ୍ତ୍ରର ସମ୍ଭାର,
ତା ଥିଲା ପାକିସ୍ଥାନ ପାଖେ,
ଅଠର ବରଷ କାଳ, ଭାରତ ବଢ଼ାଏ ତା'ର ଉତ୍ପାଦିକା ଶକ୍ତି,
କୃଷି, ଶିଳ୍ପ, ଶିକ୍ଷା ଆଦି, ମଣିଷଙ୍କ ସୁଖ ଓ ସ୍ୱାଚ୍ଛନ୍ଦ୍ୟ
ଲାଗେ ଏକ ମନେ ଏକ ଲକ୍ଷ୍ୟ ଧରି
କରିବ ସଂଗ୍ରାମ ଦାରିଦ୍ର୍ୟ, ଅଜ୍ଞାନ, ରୋଗ, ଦୁର୍ଦ୍ଦଶା ବିରୁଦ୍ଧେ
ସୁବିଟବେଙ୍କ ଶାନ୍ତ ଜୀବ ସିଷ୍ଟି
ରୋଇବ ମଣିଷ
ନ ଖଟାଏ ବେଶି ଧନ ଯୁଦ୍ଧ ସରଞ୍ଜାମେ, ସେ ତ ବୁଝେ ଶାନ୍ତି ଓ
ଅହିଂସା ।

ଆଜ ଟାକଷ୍ଟାନ୍, ସେବ୍ବଦନ୍କୁଁ, ଜନ୍ମ ଦେଲା ଧନ୍କୁଁ
ଛାଡ଼ ଆନ କାମ
ଲାଗିଛି ଏକ ଧ୍ୟାନରେ ପାଦ ଆଙ୍ଗୁଠିରୁ ଦାନ୍ତ ଯାକେ
ଦେହେ ଖଞ୍ଜିବାକୁ ଯେତେ ଛେଲ୍, କାଣ୍ଡ,
ଯେତେ ଯେତେ ମାରଣାସ୍ତ୍ର,
ଯେତେ ଯାହା ପାଉଛି ସେ କିଣି
ପୃଥିବୀର ନାନା ଦେଶୁଁ

ସେ ପ୍ରସ୍ତୁତ ଚୂନା ହେଲା ଧ୍ୱଂସ ହୋଇ ଗଲା
ଭାରତୀୟ ବିମାନର କ୍ରମାଗତ ବୋମାମାଡ଼େ
ଭାରତୀୟ ସେନାଙ୍କର ବିପୁଳ ବିକ୍ରମେ ନାନା କ୍ଷେତ୍ରେ
ଗଲା ତାର ସେବ୍ବ ଅଠର ବରଷ
ଘଣ୍ଟା ଆଉ ମିନଟ୍‌ର କଣ୍ଠେ
ବୃଥା, ଅକାରଣ
ଫଳ ହେଲା ଖାଲି କ୍ଷତ, ଦୁର୍ଦ୍ଦିନ ଦୁର୍ଦ୍ଦଶା,
ଜଗତରେ ଅପଯଶ ।

୪୪

ଲଢ଼େ ଭାରତ ବିମାନ କ୍ଷୁଦ୍ର ନ୍ୟାଟ୍ ଏ ଦେଶ ତିଆରି
ଆକାଶରେ ସେବର୍‌ଜେଟ୍ ସଙ୍ଗେ
ନ ଥାଉ ତା'ର ଶକ୍ତି ସେବର୍‌ଜେଟ୍ ପରି ଉଡ଼ିବାକୁ ମେଘର
ଉହାଡ଼େ
କାହିଁ କେତେ ଦୂରେ
ଗତି କରିବାକୁ ଘଣ୍ଟାକୁ ଅଠରଶ' ମାଇଲ୍,
ସାଇରେନ୍ ବାଜେ, ଗ୍ୱହୁଁ ଗ୍ୱହୁଁ ଦଶେ ଶତ୍ରୁର ଉଡ଼ାଜାହାଜ,
ହଠାତ୍ ଦଶେ କାହୁଁ କାହୁଁ ସେ ଉଡ଼ିଆଇଲେ ଭାରତୀୟ ନ୍ୟାଟ୍,
ନଗର ଓ ଜନପଦ ଧ୍ୱଂସକାରୀ ଆକାଶରୁ ମୃତ୍ୟୁ ବରଷାରୁ,
ଟେଲା ମାରି ଖସେ ସାଇଁ ସାଇଁ ଉଲ୍‌କା ପରି ସେବର୍‌ଜେଟ୍

ସେଇ ସଙ୍ଗେ ସଙ୍ଗେ ତା ଆଡ଼କୁ ମୋଡ଼ିଯାନ୍ତି ନ୍ୟାଟ୍
ସମକୋଣ କରି,
ଝୁହୁଁ ଝୁହୁଁ ସେମାନେ ତା ମୁଣ୍ଡ ଉପରେ
ଉଡ଼ିପଡ଼ି ବୁଲିପଡ଼େ, ଶତ୍ରୁ
କିନ୍ତୁ ତା'ର ଲଞ୍ଜ ଅଜ ଦେହ ବଡ଼
ଆକାଶରେ ନେବାକୁ ପଡ଼େ ବଡ଼ ଆୟାନ୍ତରେ ଘେରି
ବୁଲାଇବାକୁ ତା ମଙ୍ଗ, ଉଠିବାକୁ ଉପରକୁ,

ଠିକ୍ ସେତେବେଳେ ଚଟ୍‌ପଟ୍ ବୁଲିପଡ଼ି ଖସି ଚଢ଼ି ନାନାଦି
କୌଶଳେ
ଲାଗିଯାନ୍ତି ତା ପଛେ ପଛେ ଭାରତ ବିମାନ
ଚନଶନ୍ଦ ପାଅଁଶ' ଗଜରୁ ଲକ୍ଷକରି ମାରନ୍ତି ବନ୍ଧୁକ
ଖଣ୍ଡ ଖଣ୍ଡ ହୋଇ, ଜଳିଜଳି
ଖସିପଡ଼େ ସେବର୍‌ଜେଟ୍ ।



ଭାରତର ବୀର ନୌବାହିନୀ
ତୁଲାନ୍ତି ଦାୟିତ୍ୱ, ଅଶ୍ରାନ୍ତ, ଅକ୍ଲାନ୍ତ ଭାବେ ଗତ ଦିନ ଖଣ୍ଡି
ଅନ୍ତ ହରବରେ,
ନଜରପତ୍ର ରଖନ୍ତି ଅତୁଟ ସମୁଦ୍ରରେ
ଭାରତର ଅଢ଼େଇଶ ବାଣିଜ୍ୟ ପୋତର
ଦିଅନ୍ତି ଅଭୟ ଭାରତର ଦୁଇପଟ ସମୁଦ୍ର କୂଳରେ ଥିବା
ବନ୍ଦର ଓ ନଗରମାନଙ୍କୁ
ଯେପରିକି ନ ଆସିବ ଶତ୍ରୁ ସେଇ ବାଟେ ରଣତରୀ ବାହି
ମାରିବାକୁ ବୋମା ଭାରତ ଦେହକୁ ସମୁଦ୍ରରୁ
ଓହ୍ଲାଇ ଦେବାକୁ ଯେଣେ ତେଣେ ହଜାର ହଜାର ଆକ୍ର ଣକାରୀ
ଦଉଡ଼ାନ୍ତି ପାକିସ୍ଥାନ ରଣତରୀ ସମୁଦ୍ର ବକ୍ଷରୁ

ତାଙ୍କର ଶେଷ ଆଶ୍ରୟ କରାଚିର ବନ୍ଦରକୁ
ଖୋଜ ଖୋଜ ତଡ଼ ତଡ଼
ଯୁକ୍ତରାଷ୍ଟ୍ର ଆମେରିକା ଦେଇଥିବା ପାକିସ୍ଥାନ୍‌ର
ସବ୍‌ମେରିଇନ୍‌ଟାକୁ ସେଣ୍ଟ ଯାହା ନାଁ 'ଗାଜି'
ପାଣି ତଳେ ତଳେ ଲୁଚି ଲୁଚି ଛପି ଛପି ଆସି
ମାରି ଥାଆନ୍ତା ଯେ
ଭାରତୀୟ ଜାହାଜକୁ
ଟର୍ପେଡ଼ୋ
'ଗାଜି' ଲୁଚେ କରାଚି ବନ୍ଦରେ
ପାକିସ୍ଥାନ୍ ରଣତରୀମାନ ଭାରତୀୟ ନୌବାହିନୀ ଡରେ
କରାଚିରୁ ଆଉ ନ ବାହାରେ ।

୪୭

ଅବିସ୍ମରଣୀୟ
ଭାରତୀୟ ସେନା
ଯେଉଁମାନେ ଏ ଦେଶର ଏ ଜୀବନ ମରଣ ଯୁଦ୍ଧସନ୍ଧି ବେଳେ
ବାଇଶ ଦିବସ ଅବିରାମ ନିରବଚ୍ଛିନ୍ନ ପ୍ରବଳ ସମର କାଳେ
ଯେତେବେଳେ ଭାରତ ସୂର୍ଯ୍ୟକୁ ସତେ ଅବା ଗ୍ରାସିବାକୁ
ଆସୁଥିଲା ଏକ ଅଶ୍ଳୀଳ ଅସଭ୍ୟ ନିଷ୍ଠୁର ଅରଣା କେଉଁ
ପଡ଼ୁଥିଲା ତାର ଅପବିଷ ଛାଇ ଏ ଦେଶ ପୁର ପଲ୍ଲୀରେ
ପ୍ରତ୍ୟେକ ଅଙ୍ଗରେ
ରଖିଲେ ଏ ଜଗତରେ ସ୍ୱଦେଶର ଟେକ
ଅପୂର୍ବ ଦେଶ ପ୍ରେମରେ, ନିଜ ବାହୁବଳେ ପୁଣି ବୁଦ୍ଧି ବଳେ,
ଗାଉଥିବ ଭବିଷ୍ୟତ, ସେଣ୍ଟ ଗୀତ କଳସ୍ୱନେ
କହୁଥିବେ ଭବିଷ୍ୟତେ ଭାରତୀୟ
ଥିଲେ ଏଣ୍ଟ ଦେଶେ ଦିନେ—
ଘଟିଥିଲା ଏଣ୍ଟପରି—

୫୭

ଏଇ ବାଇଶ ବର୍ଷରେ
ଗଲା ସତେକ ଗୋଟାଏ ଯୁଗ
ନୂଆ ଯୁଗ ଜନ୍ମହେଲା ଭାରତରେ
ହେଲା ଏକ ମହାଜାତି ଗଢ଼ା
ଜନ୍ମହେଲା ପୃଥିବୀର
ଆନ୍ତର୍ଜାତୀୟ କ୍ଷେତ୍ରରେ
ମାନ ଓ ସମ୍ଭ୍ରମେ
ବଳ ସାହସରେ
ଆତ୍ମ ମର୍ଯ୍ୟାଦାରେ
ଅତି ବଡ଼ ହୋଇ ଏକ ଜାତି
ଭବିଷ୍ୟତର ପୃଥିବୀରେ ଏକ ଶକ୍ତି
ବନ୍ଧୁର ଆନନ୍ଦ, ଶତ୍ରୁର ଶଙ୍କା, ଶାନ୍ତିର ଜଗୁଆଳ,

ଯେଉଁ ସତୁରିଲକ୍ଷ କୋଟି ଭାରତୀୟ
ଏ ପୃଥିବୀରେ ଥିଲେ
ଏଇ ବାଇଶ ବର୍ଷରେ ନୂଆଯୁଗ ଜନ୍ମବେଳେ
କିଏ ଯୁଦ୍ଧ ଭୂମିରେ ଲଢ଼ିଲେ, ରକ୍ତ ଢାଳିଲେ,
କିଏ ଅବା ରହିଥିଲେ ଘରେ,
କିନ୍ତୁ ସେମାନେ ସମସ୍ତେ, ଆବାଳ-ବୃଦ୍ଧ-ବନିତା
ଆପଣାର ଚେତନାରେ
ସମସ୍ତେ ଉପସ୍ଥିତ ଥିଲେ ସେଠି
ରଣଜୟୀ ଆଗିଆଣି ବାହିନୀର ପଛେ ପଛେ
ଏକ ବିରାଟ ମନୁଷ୍ୟ ସମୁଦ୍ର
ସେଠି ଗୋଟି ଗୋଟି ହୋଇ ସତୁରିଲକ୍ଷ କୋଟି ମଣିଷ ।

୫୮

ଭବିଷ୍ୟତ୍ ହୋଇଥିବ ନାନା ନାମ
ପୂଜା କରୁଥିବ ନାନା ଛବି, ଘରେ ଘରେ ।

ସେମାନେ
ନାନା କ୍ଷେତ୍ରରେ
ଏ ଦେଶର ବରେଣ୍ୟ ନେତା, କର୍ମୀ ଓ ରକ୍ଷକ, ବୀର ପୁତ୍ରକନ୍ୟା
ଜଓ୍ୱାନ୍ ଶବ୍ଦେ ସେମାନଙ୍କୁ,
ଜାଣେ ଦେଶ ଅଛି ତା ପଛରେ, ସେଇ ତ ତା' ବଳ,
ରାଷ୍ଟ୍ରପତି, ଉପ-ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ମନ୍ତ୍ରୀପରିଷଦ,
ରାଜ୍ୟ ରକ୍ଷା ମନ୍ତ୍ରୀ
କାଶ୍ମୀର, ପଞ୍ଜାବ, ରାଜସ୍ଥାନର ମନ୍ତ୍ରିମଣ୍ଡଳୀ
ଭାରତୀୟ ନେତୃବର୍ଗ, ଭାରତ ଜନତା,
ଆଉ ରଣାଙ୍ଗନେ—
ଭାରତର ବୀର ସେନାପତିମାନେ—

ଭାରତ ସେନାବାହିନୀର ମୁଖ୍ୟ ସେନାପତି
ଜେନେରାଲ୍ ଜେ· ଏନ୍. ଚୌଧୁରୀ
ବୁଦ୍ଧି ଆଉ ରଣ କୌଶଳରେ ଅତି ଦକ୍ଷ,
ପୃଥିବୀ ଭିତରେ ଟ୍ୟାଙ୍କ୍ ଓ ଆର୍ମର ଯୁଦ୍ଧେ
ଅଦ୍ୱିତୀୟ ବିଶାରଦ ବୋଲି ଅଛି ଖ୍ୟାତି,

ଆମେରିକାର ପ୍ୟାଟନ୍ ଟ୍ୟାଙ୍କ୍
ଗର୍ବ ଥିଲା ଯା'ର ଦୁର୍ଭେଦ୍ୟ ଅଜେୟ ବୋଲି
ଜେନେରାଲ୍ ଜେ. ଏନ୍. ଚୌଧୁରୀଙ୍କ ପ୍ରତିଭା ଓ କୌଶଳ ଆଗରେ
ହେଲା ସତେ ଅବା ଖାଲି ଅଭଙ୍ଗା କଣ୍ଢେଇ
କି ଭେଦ ସେ ଜାଣିଲେ ତାର
କଲେ କି ଉପାୟ ଖୋଜିଲେ ଅସ୍ତ୍ରରେ କି କମିଆଁ
ଗୋଟା ଗୋଟା ଗୁଳିମାଡ଼େ ଜଳିଉଠେ ସେ ଅସୁର
ହୁଏ ଖାଲି ଲୁହାର ଅଙ୍ଗାର

ଜଗତ ବିସ୍ମିତ ହେଲା, ନାନା ଦେଶୁଁ ଧାଉଁଛନ୍ତି ରଣ ଅସ୍ତ୍ର
କାରିଗରଙ୍କର

କି ହେଲା କିପରି, ଜାଣିବାର ପାଇଁ
"ମୁଁ ବି ବିସ୍ମିତ ନିଜେ" ହସି କହନ୍ତି ବନସ୍ପତି ସ୍ୱଳ୍ପବାକ୍
ଜାମର ମଣିଷ ଜେନେରାଲ୍ ଜେ. ଏନ୍. ଚୌଧୁରୀ
ସୈନ୍ୟ ସ୍ଥାଳନାର ଯେଉଁ ଅଭାବ କୃତିତ୍ୱ ଫଳେ
ହଠାତ୍ ଦେଖିଲା ପାକିସ୍ତାନ୍
ତା ଅଙ୍ଗର ପ୍ରତି ମର୍ମସ୍ଥଳ ଆଗେ
ଭାରତର ବର୍ଛା ଫଳା ଏକ ଏକ
ଯେମିତ ଅବା ଦଶଭୁଜା ମୃଣ୍ମୟୀ ଦେବୀଙ୍କ ଦଶଭୁଜ ପ୍ରହରଣ
ବିନ୍ଧିଛି ମହିଷାସୁରର ଦଶ ସ୍ଥାନେ
ଶିଆଲକୋଟ୍ ଓ ମିର୍ପୁରଠାରୁ ଗଦ୍ରାଯାକେ
ଶକ୍ତି ନାହିଁ ଆଉ ଚଳିବାକୁ ଅଙ୍ଗ
ସେ ଅଦ୍ଭୁତ କୌଶଳରେ ନମାରି ପାକିସ୍ତାନର ନିରୀହ ମଣିଷ
ନ ଭାଙ୍ଗି ତା ଘର, ନ କରି ତା କ୍ଷେତ ବାରି ଜୁର
ଭାରତୀୟ ସେନା ଭାଙ୍ଗିଲା ତାର ଆର୍ମର
ତା ଯୁଦ୍ଧାସ୍ତ୍ରର ମେରୁହାଡ଼
ସତର ବର୍ଷର ରଣସଜ୍ଜା ତାର
ଧ୍ୱଂସ କଲା ସତର ଦିନରେ
ସେ ମସ୍ତିଷ୍କ ସେ ଯୋଜନା ଯାହାଙ୍କର
ତାଙ୍କର ନାଁ, ଭାରତର ବୀରପୁତ୍ର, ଭାରତ ସେନାନାୟକ
ଜେନେରାଲ୍ ଜେ. ଏନ୍. ଚୌଧୁରୀ

ଭାରତର
ବିମାନ ବାହିନୀ ସେନାପତି
ଆକାଶ ଯୁଦ୍ଧରେ ଅତି ଦକ୍ଷ ବିଶେଷ ଅଭିଜ୍ଞ
ଏଆର୍ ମାର୍ଶାଲ୍ ଅର୍ଜନ୍ ସିଂ,
ସେ ଯେଉଁ ଉଡ଼ାଳି ଦଳ
ନ୍ୟାଟ୍ ଓ ହଣ୍ଟର୍ ବଳ ଜଗତକୁ ଦେଖାଇଲେ
କିପରି ତା ଧ୍ୱଂସ କରିପାରେ ପୃଥିବୀରେ ଅତି ଶକ୍ତିଶାଳୀ

ସେଟଲ୍‌ମେଣ୍ଟ୍ ଯାନ,
କି ଉପାୟ କଲେ ଅଳ୍ପତମ କ୍ଷତି ସହ୍ୟ ଅବା ନିରାପଦେ
ଫେରିଆସି ହୁଏ ଯାଇ ଉଡ଼ି ଖେଳ ନାଚ ଶତ୍ରୁ ବ୍ୟୂହ ଉପରେ
ଉପରେ
ଅଜାଡ଼ି ଧ୍ୱଂସର ବୋମା
ଫେରିଆସି ହୁଏ ଶତ୍ରୁପକ୍ଷ ବିମାନ ବିଧ୍ୱଂସୀ ଆମେରିକା ସୃଷ୍ଟ
ତୋପ ମାଳ ମାଳ ଯେଉଁ ବ୍ୟୂହ ଭିତରରୁ ଫିଙ୍ଗୁଥାଏ ଆକାଶକୁ
ସତେ ଅବା ଆଗ୍ନେୟଗିରିରୁ ବିସ୍ଫୋରକ
ଉଡ଼ୁଥାଏ ଚଡ଼ିକଟି ଶତ୍ରୁର ଦୁର୍ଦ୍ଧର୍ଷ ବମ୍ବର୍‌ପଲ୍
କି ଉପାୟେ ଶତ୍ରୁପକ୍ଷ ବିପର୍ଯ୍ୟସ୍ତ କରି
ଚାଲିଆସି ହୁଏ ସେହି ମୃତ୍ୟୁର ବ୍ୟୂହରୁ
ପୁନର୍ବାର ଯିବାପାଇଁ ତେଣେ ଶତ୍ରୁପାଇଁ ଭାର ବୋଝ
କି କାଇଦା କଲେ ଗୋଟିଏ ବି ବୋମା ନଷ୍ଟ ହୁଏନାହିଁ
ପଡ଼େନାହିଁ ଅଥାନରେ ଭାଙ୍ଗେନାହିଁ ନିରୀହ ଲୋକର ମୁଣ୍ଡ
ଆଜି କି ଉପାୟେ ସମ୍ପର୍କ ଓ ସମନ୍ୱୟ ରଖିହୁଏ ପୂର୍ଣ୍ଣଭାବେ
ବିମାନ ଆକ୍ରମଣର

ସ୍ଥଳ ବାହିନୀର ଆକ୍ରମଣ ସଙ୍ଗେ ତାଳେ ତାଳେ
ସେ କୌଶଳ ସେ ପ୍ରତିଭା ସେ ବିମାନ ଚାଳନାର ବୁଦ୍ଧି
ଶିକ୍ଷା ଚାଳନ ଓ ନିର୍ଦ୍ଦେଶ
ଯେ ଦେଲେ ଏ ସମରେ
ସେ ଆଶ୍ଚର୍ଯ୍ୟ ଆକାଶ ଯୁଦ୍ଧର ସ୍ରଷ୍ଟା
ଏଆର୍ ମାର୍ଶାଲ୍ ଅର୍ଜନ୍ ସିଂ
ଭାରତର ବିମାନ ବାହିନୀ ସେନାପତି ।

ଭାରତର ନୌବାହିନୀ ସେନାପତି
ଭାଇସ୍ ଆଡ୍‌ମିରଲ୍ ବି. ଏସ୍. ସୋମାନ୍ ।

ନାହିଁ ଗୋଟେ ବୋଲି ସବ୍‌ମେରିନ୍ ଭାରତର,
ରଣତରୀ ଯାହା ଅଛି ତା ଠିକ ଭଣ୍ଡାରେ ନାହିଁ ତ ସୁବିଧା
ପାକିସ୍ତାନୀ ରଣତରୀ ପରି
ଆଉଥରେ ପୂର୍ତ୍ତି କରିବାକୁ ଠିକ ସମୁଦ୍ର ମଝିରେ
ନ ଫେରି ବନ୍ଦର,
ଯୁଦ୍ଧ ହେଲାବେଳେ ହେଉଥିଲା ନାନା ମରାମତି
ରଣତରୀ ସଂଖ୍ୟା ନୁହଁଇ ଯଥେଷ୍ଟ
ଜଗିବାକୁ ଭାରତର ପୂର୍ବ ଓ ପଶ୍ଚିମେ
ଏତେ ଦୀର୍ଘ ଉପକୂଳ ସୀମା
ଜଗିବାକୁ ବିଶାଳ ସମୁଦ୍ର,
ଏତେ ଅସୁବିଧା ସତ୍ତ୍ୱେ
ଦିନ ରାତି ଚେଷ୍ଟାକରି
ଯେ କରିପାରିଲେ ଭଡ଼ୁଁ ଭଡ଼ୁଁ
ଭାରତୀୟ ନୌବାହିନୀକୁ ଉପଯୁକ୍ତ

ନରବରେ ଅଟକାଇ ଦେଲେ ଶତ୍ରୁ ନୌସେନାକୁ
କରାଚି ବନ୍ଦରେ
ସତେ ଅବା ଜେଲ୍ ଦେଲା ପରି
ଯୋଦ୍ଧାଙ୍କର ସତର୍କ ଓ ଅକ୍ଲାନ୍ତ ଉଦ୍ୟମ ଯୋଗୁଁ
ସମ୍ଭବ ନ ହେଲା ପାକିସ୍ତାନ ଦ୍ୱାରା
ସମୁଦ୍ରରୁ ଭାରତ ଆକ୍ରମଣ
ବଞ୍ଚିଲା ବନ୍ଦର, ଉପକୂଳ ସହର ଓ ଗାଁ,
ସମୁଦ୍ରରେ ବେପାର ବୋଇତ
ସେହି ଦାୟିତ୍ୱର ଯୋଗ୍ୟ ସମ୍ପାଦକ
ନୌବାହିନୀର ମୁଖ୍ୟ
ଭାଇସ୍ ଆଡ଼୍‌ମିରାଲ୍ ବ. ଏସ୍. ସୋମାନ୍ ।

ଏ ଯୁଦ୍ଧରେ ରଣଭୂମି ହେଲ୍ଟରେ ସେକ୍ଟରେ
ସ୍ଥାନେ ସ୍ଥାନେ ସେନା ସଙ୍ଗେ ରହି ଆଗିଆଣି ଥାଟେ

ଚଳାଇଲେ କାର୍ଯ୍ୟ ଯେତ୍ପ ଅସୀମ ଭାରତ୍ରେ
ଅକ୍ଲାନ୍ତ ତତ୍ପରତାରେ

ସ୍ଥଳଭାଗେ ସେ ଜେନେରାଲ୍ ହରବକ୍ସ ସିଂ
ଆଉ ଆକାଶ ଯୁଦ୍ଧରେ ଏଆର୍ ଭାଇସ୍-ମାର୍ଶାଲ୍ ରାଜାରାମ୍

ଜେନେରାଲ୍ ହରବକ୍ସ ସିଂ, ଉଣେଇଶ ଅଠସ୍ତରିଶ ମଇ ମାସ
ଟିଥ୍‌ୱାଲ୍ ସଂଗ୍ରାମ ଭାର, ନାନା ସ୍ଥାନେ ଦେଖିଛନ୍ତି ଯୁଦ୍ଧ,
ଚୀନ୍ ଅବା ପାକସ୍ଥାନ ସଂଘର୍ଷରେ ପୂର୍ବେ
ଅସୀମ ଭାରତ୍ସ ସାହସ ଓ ଧୈର୍ଯ୍ୟପାଇଁ ସର୍ବତ୍ର ବିଦିତ
ପୁଣି ଲେଫ୍‌ଟନେଣ୍ଟ ଜେନେରାଲ୍ ସପ୍ପ, ଜେ. ଏସ୍. ଧିଲନ୍,
କେ ଏସ୍. କଟୋଚ୍ ଆଉ ପି. ଓ. ଡନ୍

ଏ ଯୁଦ୍ଧରେ ବିଶେଷରେ ସ୍ମରଣୀୟ ସ୍ଥଳ ବାହିନୀରେ
ବନ୍ଧୁଗଣେ ବିଦିତ ଯେ ଯୋଗୀ ଧିଲନ୍ ବୋଲି
ଅତି ଦୀର୍ଘ ପ୍ରକାଣ୍ଡ ଆକାର
ଅତି ଦୃଢ଼ ଟାଣ ତାଙ୍କ

କଟୋଚ୍ ବିଦିତ କାଶ୍ମୀର୍ ସିଂ ବୋଲି
ସମଗ୍ର କାଶ୍ମୀର ଅଧିକନ୍ଧ ଜଣା ତାଙ୍କୁ
ସବୁ ଅଛି ତାଙ୍କ ନଖ ଦର୍ପଣରେ

ଲେଫ୍‌ଟନେଣ୍ଟ କର୍ଣ୍ଣେଲ୍ ଡନ୍
କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଶିକ୍ଷିତ
ଆର୍ଟସ୍ ଓ ଆଇନ ବିଦ୍ୟାରେ
ଅଭିଜ୍ଞ ରଣନୀତିଜ୍ଞ
ଆଫ୍ରିକାରେ ବିଶ୍ୱଯୁଦ୍ଧ ବେଳେ ପାଇଥିଲେ ଖ୍ୟାତି
ଭାରତର ସେନା ବାହିନୀରେ ବହୁକାଳ କାର୍ଯ୍ୟ କରି
ଏହି ବର୍ଷ ନେଇଥିଲେ ଅବସର

କିନ୍ତୁ ଆସିଗଲା କଚ୍ଛ ରଣାଙ୍ଗନେ ପାକସ୍ଥାନ୍ ଆକ୍ରମଣ
ସ୍ୱଦେଶର ରକ୍ଷାପାଇଁ ନ ନେଇ ବିଶ୍ରାମ ରହିଲେ ସେ ନିଜ ସ୍ଥାନେ

ଆକାଶ ଯୁଦ୍ଧରେ ଏଆର୍ ଭାଇସ୍ ମାର୍ଶାଲ୍ ରଜାରାମ୍
ଏଆର୍ ମାର୍ଶାଲ୍ ଅର୍ଜନ୍ ସିଂଙ୍କ ସଚେତା ଡାହାଣ ହାତ
ପଶ୍ଚିମ ପ୍ରାନ୍ତର ବିମାନ ଯୁଦ୍ଧରେ ସେ ଥିଲେ ଅଗ୍ରଣୀ ସଞ୍ଚାଳକ
ନିବିଡ଼ ସମ୍ପର୍କ ରଖୁଥିଲେ
ସ୍ଥଳ ବାହିନୀର ଜେନେରାଲ୍ ହର୍‌ବକ୍ସ ସିଂଙ୍କ ସଙ୍ଗେ

ଏଆର୍ ମାର୍ଶାଲ୍ ଅର୍ଜନ ସିଂଙ୍କ ଆଉ ଏକ ସହକର୍ମୀ
ସୁବିଖ୍ୟାତ ବୈମାନିକ
ଏଆର୍ ଭାଇସ୍ ମାର୍ଶାଲ୍ ପି. ସି. ଲାଲ୍
ଅନେକ ସମୟେ ନିଜ ସ୍କନ୍ଧେ ଭାର ଘେନଛନ୍ତି
ଏଆର୍ ମାର୍ଶାଲ ଅର୍ଜନ ସିଂ ଓ ଏଆର୍ ଭାଇସ୍ ମାର୍ଶାଲ୍
ରଜାରାମଙ୍କଠାରୁ,
ସେ ମଧ୍ୟ ସେହି ବର୍ଷ ନେଇଥିଲେ ଅବସର,
ଦେଶର ବିପତ୍ତି ବେଳେ ନ ନେଇ ବିଶ୍ରାମ
ଲାଗିଗଲେ ସ୍ୱଦେଶ କାର୍ଯ୍ୟରେ
ମନପ୍ରାଣ ଦେଇ

ଭାରତର ଯେତେ ଯେତେ ବୀରପୁତ୍ର
ପାକସ୍ଥାନ ଯୁଦ୍ଧେ
ତୁଲାଇଲେ କର୍ତ୍ତବ୍ୟ ଓ ଦାୟିତ୍ୱକୁ
ପଣ କରି ଆପଣା ଜୀବନ
ମୁହୂର୍ତ୍ତେ ନ ଦେଖି ମୁହଁ ବିଶ୍ରାମର
ରଖିଗଲେ ଅପୂର୍ବ କୀରତି
ବାସୁକୀର ଜିହ୍ୱା ନାହିଁ ବର୍ଣ୍ଣିବ ତା
ଜଣ ଜଣ କରି, ଗୋଟି ଗୋଟି କରି,
ସମସ୍ତେ ଏକାଠି
ସେମାନେ ଭାରତ ସେନା ।

## ୪୯

ଶ୍ରେଷ୍ଠତମ ଉପାଧିର ଅଧିକାରୀ ହେଲେ
ଦେଶପାଇଁ ଆତ୍ମବଳି ଦେଇ
ଲାହୋର୍ ସେକ୍ଟରେ
କମ୍ପାନୀ କ୍ୱାଟର୍ ମାଷ୍ଟର୍ ହାବିଲ୍‌ଦାର୍ ଅବ୍‌ଦୁଲ୍ ହମିଦ୍
ନୁହେଁ ସେ ଉପାଧି ଅଶୀବ ବରେଣ୍ୟ ବୀରଚକ୍ର,
ଅବା ତାହାଠାରୁ ବଡ଼, ମହାବୀର ଚକ୍ର,

ଯେବଣ ସ୍ମାରକ ଉପାଧି ଗୌରବ ଏହି ଦେଶ ଦେଇପାରେ
ତାର ବୀର ସୈନିକଙ୍କୁ
ସବୁଠାରୁ ଶ୍ରେଷ୍ଠତମ ତାହା—
ପରମବୀରଚକ୍ର
କି ତେଜ ସେ ! କି ସାହସ ! କି କଳିଜା !

ହେଇ ଘଣେ ନିଆଁ ବୃଷ୍ଟି କରି ମାଡ଼ି ଆସେ ଦର୍ପେ
ପାକିସ୍ଥାନର ସାଞ୍ଜୁଆ ବାହିନୀ ଆଗେ ଆଗେ ବିରାଟ ବିକଟ
ସୁରଟା ପ୍ୟାଟନ୍ ଟ୍ୟାଙ୍କ୍
ଶୁଣାଅଛି ସେ ଟ୍ୟାଙ୍କ୍‌ର ପ୍ରକୋପ କଥା
ଏକାଧାରେ ନାନା ଅସ୍ତ୍ରାଗାର, ନାନା ଯନ୍ତ୍ର ଖଞ୍ଜାଖଞ୍ଜି
ଚଳନ୍ତ ଟ୍ୟାଙ୍କ୍‌ରେ
ଅତି ଦୃଢ଼ ଇସ୍ପାତରେ ଆଚ୍ଛାଦିତ
ଅସ୍ତ୍ରଶସ୍ତ୍ର ତା ଦେହରେ ନ ପାରଇ ଭେଦି
ଏଇ ଥିଲା ତା ଧାରଣା,
ଗତ ପୃଥିବୀ ଯୁଦ୍ଧରେ ପୃଥିବୀର ନାନା କ୍ଷେତ୍ରେ
ୟୁରୋପ ଯୁଦ୍ଧରେ ଆଫ୍ରିକା ବାଲିରେ
ଟ୍ୟାଙ୍କ୍‌ହିଁ ତ ହୋଇଥିଲା ନାନା ସୈନ୍ୟବାହିନୀର ଜୀବନ୍ତ ଆତଙ୍କ
ଏ ତ ପୁଣି ଆମେରିକା କୃତ, ବିଜ୍ଞାନର ଉତ୍କର୍ଷ ସମ୍ଭୂତ,

ଲମ୍ବି ଅଛି ଏଇ ତାର ଥୋଡ଼, ସୁଦୀର୍ଘ କମାଣ
ଖାଲି ମୃତ୍ୟୁ ସେ ଉଦ୍‌ଗାରେ ପ୍ରକାଣ୍ଡ ପ୍ରକାଣ୍ଡ ଗୋଳା ମାରି
ପୁଣି ବୁଲାଉଛି ଚକ୍ଷୁଁରୁ ମେସିନଗନ୍ ବାଟେ ଗୁଳି ବୃଷ୍ଟି
ଆକାଶକୁ ରକ୍ଷୁଛି ତା ଆଣ୍ଟି ଏଆର୍‌କ୍ରାଫ୍‌ଟ ଗନ୍
ଆସିଲେ ବିମାନ ଉଡ଼ିଲେ ତାହା ଉପରେ କରିଦେଇ ପାରେ ଧ୍ୱଂସ,
ତା ଭିତରେ ଅଛି କମ୍ପ୍ୟୁଟର, ସତେ ଅବା ଅଙ୍କ କଷା
ଲୁହାର ମସ୍ତିଷ୍କ

ଖାଲି ତା ଚାଳକ ସୂଚାଇବ ତାକୁ
କେଉଁ ପଟେ କେତେ ଡିଗ୍ରୀ ତାର ଲକ୍ଷ୍ୟସ୍ଥଳ
ଆଉ କିଛି ଲୋଡ଼ା ନାହିଁ କରିବ ସେ କାମ ତାର ଲୁହାର ଅସୁର
ଧାଇଁବ ଘଣ୍ଟାକୁ ପଇଁତିରିଶ ମାଇଲ୍ ଆଗକୁ ଅବା ପଛକୁ
ଅଣୀ ଟନ୍ ଓଜନର ସେ ଦାନବ ପ୍ୟାଟନ ଟ୍ୟାଙ୍କାସୁର
ଥୋଡ଼ ଟେକି ସତେ ଅବା ବକାସୁର ଅଜା
ନାହିଁ ଲୋଡ଼ା ତାହାପାଇଁ କୌଣସି ସଡ଼କ
ହୁଡ଼ ବାଡ଼ ଭାଙ୍ଗି ଦଳି ପଶି
ଚାଡ଼ ଖୋଲ ସମାନ କରି ଡିପ ଅବା ଖାଲ
ଠିଆ ଫସଲର କ୍ଷେତ କି ଅବା ଅରମା

ଧାଇଁବ ପ୍ୟାଟନ୍ ଟ୍ୟାଙ୍କ୍ ଧ୍ୱଂସ କରି କରି ଗୁଳିମାଡ଼େ
ତା ଆଗରେ ଯା ପଡ଼ିବ ତାହା
କି ଅବା କଅଁଳ ମଣିଷ ଶରୀର ତାହା ଆଗେ,
ନିମିଷକେ ଟିକି ଟିକି ହୁଏ
ଅବା ହାତୀ ଘୋଡ଼ା ଗୋରୁ ବା ମଇଁଷି !

ଲୁହା କି କଂକ୍ରିଟ୍ ଗଢ଼ା ପାଚିରି କି କୋଠା ଅବା ଯେତେ
ଆଉ ଯେତେ ଯାହା
ପଡ଼ିଲେ ସେ ଦୈତ୍ୟ ଆଗେ ହୁଏ ଗୁଣ୍ଡ ଗୁଣ୍ଡା,
ସେଇ ତା କ୍ଷମତା,

ତେଣୁ ତ ଆସୁବ୍
ଭାବଥିଲେ ପ୍ୟାଟନ୍ ଟ୍ୟାଙ୍କ୍ ମାଳ ମାଳ ଧରି,
ସୁଖେ ଗାଇ ଗୀତ,
ଚୂନା କରି କରି ବାଟେ ବାଟେ ଭାରତର ଗାଁ ଓ ସହର

ଯେତେ ମାଟିଘର ଚୁଳଘର କୋଠାଘର
ଟିକି ଟିକି ଚୂନ ଚୂନ କମା ମାଂସ କରି ଯେତେ ଭାରତ ମଣିଷ ଦେହ
ଶିଶୁ, ସ୍ତ୍ରୀ, ଯୁବା ଅବା ବୃଦ୍ଧ
ହଲ ହଲ ଦୋହଲ ଦୋହଲ ପହଞ୍ଚବେ ଢଳି
ଚୌଦିଗରେ ଆତଙ୍କ ଛୁଞ୍ଚାଡ଼ି,
ଦେଖୁଥିବେ ଅବା ଅଶରୀରୀ ଗଜ୍ନୀର୍ ମାମୁଦ୍
ହସୁଥିବେ ବଳଗଲ ତୁମେ ହେ ମୋର ଦସ୍ୟୁଦାଦ ମୋହଠାରୁ
ଭାରତୀୟ ମଣିଷର ଯେତେ ଲୁହ ଆଉ ଲହୁ, ଯେତେ ଆକୁଳ
କାନ୍ଦଣା

ଯେତେ ବୁଦ୍ଧି କ ବସ୍ତର ହିତାହିତ ଜ୍ଞାନ, ମଣିଷପଣିଆ
ଚିରକାଳ ପାଇଁ ପିଷ୍ଟ ହୋଇ ଲୁପ୍ତ ହେବ
ସେହି ସଁବାଳୁଆ ପରି ପ୍ୟାଟନ୍ ଟ୍ୟାଙ୍କର ଗୋଡ଼ତଳେ
ତା'ର ତ,
ଶୁଣିବାକୁ କାନ ନାହିଁ,
ଅନୁଭବ କରିବାକୁ ନାହିଁ ତ ହୃଦୟ ତା'ଠିଁ,
ସେ ତ ଖାଲି ସଶରୀରୀ ମୃତ୍ୟୁ,
ପ୍ୟାଟନ୍ ଟ୍ୟାଙ୍କ୍

କଏ ସେହି ମୃତ୍ୟୁଞ୍ଜୟୀ ବୀର
ଭାରତ ସନ୍ତାନ
ଆଗଭର ହୋଇ ଯିଏ
ମନୁଷ୍ୟ ଶରୀର ଧରି

ଠିଆହେଲେ ବେକ ସଳଖେଇ ଛାତିକ ଫୁଲାଇ
ରାଇଫଲ୍ ଧରି

ଅଶୀଟନ ଓଜନର ଲୁହାମୟ
ଗୁଳିବର୍ଷୀ ଦୈତ୍ୟ ଆଗେ,
ଚିତ୍କରିଲେ ଦୃପ୍ତ ସ୍ୱରେ
**ଏ ମଣିଷ ମୃତ୍ୟୁଠାରୁ ବଡ଼**
ଟ୍ୟାଙ୍କ୍ କିବା ତାହା ଆଗେ,
ଭୟ ନାହିଁ ମୃତ୍ୟୁ ନାହିଁ ମଣିଷ ଅମର !

ଧ୍ୱାନ୍ତ ହେଲ ଅବା, ବୁଦ୍ଧଙ୍କର ମହାବାଣୀ
ଶୁଣ ଭିକ୍ଷୁ, ମୃତ୍ୟୁର ବିନାଶ ଅଛି ମୃତ୍ୟୁ ବି ସସୀମ ।

ସେ ଯୁବକ ଅବ୍ଦୁଲ୍ ହମିଦ୍, ଭାରତ ଜଓ୍ୱାନ୍
ସଶ୍ରଦ୍ଧାରେ ସମର୍ପଣ କରି ଦେଶର ମାଟିକୁ
ସେ ମାଟିରେ ଗଢ଼ା ତାଙ୍କ ଦେହ
ଚଳାଇଲେ ଗୁଳି ଏକ ମୁହୂର୍ତ୍ତରେ
ନିଆଁ ଜଳି ଉଠେ ପ୍ୟାଟନ୍ ଟ୍ୟାଙ୍କ୍ ଗଲ ଧ୍ୱଂସ ହୋଇ ।

ଝଲନ୍ତି ତାଙ୍କର ତନକରେ ଶତ୍ରୁପକ୍ଷ ଗୁଳିବୃଷ୍ଟି
ସାଇଁ ସାଇଁ ଧାଇଁ ଧାଇଁ
କରୁଅଛି ଟ୍ୟାଙ୍କ୍ ତାହା କାମ
ଉଦ୍‌ବୁଦ୍ଧ ସେ କାଳନ୍ତକ ବୀର ଅବଦୁଲ୍ ହମିଦ୍
ନ କରନ୍ତି ଭ୍ରୂକ୍ଷେପ ତେଣିକି, ପୁଣି ଆଜି ଥରେ
କଥା କହେ ତାଙ୍କ ହାତ, ଆହା କି ଆଶ୍ଚର୍ଯ୍ୟ
ଟଳପଡ଼େ ଆଜି ଏକ ପ୍ୟାଟନ୍ ଟ୍ୟାଙ୍କ୍ ଜଳି ଜଳି,
ପୁଣି ଆଜି ଥରେ, ଆଖି ପିଛୁଡ଼ାକେ ଉଠିଲା ସେ ହାତ
ବିସ୍ମୟେ ଅନାଏଁ ଶତ୍ରୁ, କହ୍ୟେ, ଏ କି ରୂପ
ଏ କି ଆଉଥରେ ଉଠିଛନ୍ତି ଭାରତୀୟ ବୀର
କର୍ଣ୍ଣାଟ ସମରେ ଇଂରେଜର ଶଙ୍କା ହାଇଦର ଅଲ୍ଲି
ଅବା ସେ ରାଣାପ୍ରତାପ ଅବା ସେ ଶିବାଜୀ
କିଏ ଏହି ଦୀପ୍ତ ଭୀମରୂପ ଭୟ ଯାର ନାହିଁ
ମୃତ୍ୟୁ ଯାହା ପାଖେ ପରାହତ

ସଂସାରର ଯେତେ ସଂଗ୍ରାମିକା ସବେ ଅବା ପୁତ୍ରବୃନ୍ଦ
ଆଜ ମଧୁର ସଙ୍ଗୀତ,
ଚରଣଲ ରଳପ୍ଲ୍, ଏଥର ଅଚଳ ଧ୍ରୁବ କୁଶାଗ୍ର ଅସ୍ତ୍ର,
ଧ୍ୱଂସ ଦଣ୍ଡେ ନ ହେଉ ସମୂଳେ ଆଉ ବ'ଣା ପଣ
ସେ ଅଚଳ, ଚଙ୍ଗ୍ ହେଲା, ବିଷଧାନ୍ତ ଗଲା ତା'ର ଝଡ଼

ଏଥର ଆସିଲା ବେଳ
ଯବନର କେଉଁଠି ମୁହୂର୍ତ୍ତ, ଆକାଶର ସୂର୍ଯ୍ୟଠାରୁ ଆହୁରି ଉଜ୍ଜ୍ୱଳ
ବନ୍ଧଚଲା ରକ୍ଷିଗଲା କଥା କାଳେ କାଳେ ଯୁଗେ ଯୁଗେ
ଦେଇଗଲା ଏ ବିଶ୍ୱକୁ ମାନବର ମହାଦାନ୍ତ ଶୌର୍ଯ୍ୟ,
ଆସେ ବେଳ, "କଳେବରସ୍ୟ ନଷ୍ଟ୍ଖେପୋ"
ଅନନ୍ତ ସତ୍ତ୍ୱତ ଏକ ହେବା,
ହେବା ଏକ, ଦେବଲୋକ ସଙ୍ଗେ,
ଚରାଚର ସଙ୍ଗେ, ଶୂନ୍ୟ ସଙ୍ଗେ,
ସେ କେନ୍ଦ୍ରୀୟ ଶକ୍ତି ସଙ୍ଗେ
ଯେ ଅଛି ସର୍ବଦା ସବୁକାଳେ ସବୁ ମୁହୂର୍ତ୍ତରେ
ପୂର୍ଣ୍ଣ ପଞ୍ଚ ଶୂନ୍ୟ ଶୂନ୍ୟ ମହାଶୂନ୍ୟ
ନତସ୍ୟ ବାୟୁବାତି ନଚନ୍ଦ୍ର ନ ଚ ତାରକମ୍

ଚଳାଇଛି ଅଗ୍ନିବୁଲା ଗୁଳି, ଏବେ ବି ଚତୁର୍ଥ ଟ୍ୟାଙ୍କ୍
ଅବଦୁଲ୍ ହମିଦ୍, ଉଠାନ୍ତି ରାଇଫ୍ଲ୍
ସେହି ମୁହୂର୍ତ୍ତରେ ଅବା କାନେ କାନେ କଏ କହେ
ସେହି ମୂର୍ତ୍ତିମନ୍ତ ସ୍ୱଦେଶ ଜନନୀ
ହେ ବୀର, ହେ ମୋର ପୁତ୍ର ପ୍ରିୟତମ
ଦେଇଛ ପରୀକ୍ଷା ଯୁଗ ଯୁଗ ପାଇଁ, ଯଥେଷ୍ଟ
ଯାବତ୍ ଏ ଆକାଶରେ ଥିବେ ଚନ୍ଦ୍ର ସୂର୍ଯ୍ୟ
ଯାବତ୍ ଥିବ ଏ ସୃଷ୍ଟି, ଗାଉଥିବ ତୁମ ନାମ,

ଉତ୍ତର ମେରୁରୁ ଦକ୍ଷିଣ ପର୍ଯ୍ୟନ୍ତ
ସପ୍ତ ମହାଦେଶେ ସପତ ସିନ୍ଧୁରେ
ଆଜି ଭବିଷ୍ୟତେ ଏ ମନୁଷ୍ୟ ଯିବ ଯେଉଁ
ଗ୍ରହ ଅବା ନକ୍ଷତ୍ର ରାଜ୍ୟକୁ, ଚନ୍ଦ୍ର କି ମଙ୍ଗଳ
ୟୁରାନସ୍ ଅବା ନେପ୍‌ଚ୍ୟୁନ୍
ଗାଉଥିବେ ଲୋକ ତୁମର ଏ କୀର୍ତ୍ତିଗାଥା
ମାନବ ସମାଜେ ଭବିଷ୍ୟତ ବଂଶଧରଗଣ
କ୍ଷୁଧାକ୍ରାନ୍ତ ହେଉଥିବେ, ତୃଷ୍ଣାକ୍ତ ହେଉଥିବେ
ନିର୍ଭୀକ ଆଶ୍ୱାସେ, ମୃତ୍ୟୁ ନାହିଁ, ଭୟ ନାହିଁ
ବୀରପୁତ୍ର ମୋର ଏଥର ତୋ ବିଶ୍ରାମର ବେଳ
ଯାଉ ଏ ମରଣଶଯ୍ୟାର ଧୂଳଧୂଆଁ ଧୂସରିତ

ବାଜିଲା ତୋପର ଗୁଳି
ଚତୁର୍ଥ ଟ୍ୟାଙ୍କ୍‌ରୁ ଆସି ଅବ୍‌ଦୁଲ୍ ହମିଦ୍‌ଙ୍କ ଦେହେ
ହଠାତ୍ ଯେପରି ସେହି ରୂପ
ଲୋକଲୋଚନରୁ ହେଲା ଅନ୍ତର୍ହିତ
ବିଶ୍ରାମ ଲଭିଲେ ବୀର
ଜନନୀର ସ୍ନେହମୟ କୋଳେ ଚିରକାଳ ପାଇଁ
ଅବ୍‌ଦୁଲ୍ ହମିଦ୍,
ପରମବୀରଚକ୍ର ଉପାଧି ଭୂଷିତ
ଆଜି ତାଙ୍କ ପୁଣ୍ୟ ନାମ
ଜଗତରେ ଶୁଭେ,

ତାଙ୍କ ହାତ ରାଇଫଲ୍‌ର ଗୁଳିର ଶବ୍ଦ
ଶୁଭିଲା
ରାଓଲପିଣ୍ଡିରେ ଆଉ ପେକିଂରେ କମ୍ପାଇଲା ଛାତି,
ଶୁଭିଲା ସେ ଭାରତର ପ୍ରତି ଘରେ ଘରେ
ସତେ ଅବା ହେଇ ସେଠି ଠିଆ ଅବ୍‌ଦୁଲ୍ ହମିଦ୍ ବୀର
ଭାରତର ଦର୍ଶନ ଓ କାର୍ଯ୍ୟର,
ତେଜ ଓ ଓଜଃର ପ୍ରତୀକ,

ଶୁଭିଲା ସେ ଶବ୍ଦ ଓ୍ୱାସିଂଟନ୍ ସହରରେ
ଆମେରିକା ରାଜ୍ୟେ, ଯେଉଁଠି ଏ ଯୁଗର ବୈଜ୍ଞାନିକ କାରିଗରଗଣ
ଗଢ଼ିଥିଲେ ପ୍ୟାଟନ୍ ଟ୍ୟାଙ୍କ୍
ଆଜି ସେ ଶୁଭିଲା
ସାରା ଜଗତରେ ।

ଅବ୍ଦୁଲ୍ ହମିଦ୍
ଦେଖାଇଲେ ବାଗ, ପ୍ୟାଟନ୍ ଟ୍ୟାଙ୍କ୍ ଧ୍ୱଂସ କରିବାର
ତା'ପରେ ସେ ହେଲା ଏକ
ଆମୋଦଜନକ ଖେଳ ଭାରତର ଜଓ୍ୱାନ୍‌ର,
ଯେତେ ପ୍ୟାଟନ୍ ଟ୍ୟାଙ୍କ୍ ଧ୍ୱଂସ ହେଲା
ତା' ସଂଖ୍ୟା ଦୁଇଶ ଛବିଶ

୭୦

ଏଇ କ୍ଷଣେ ସତେ
ଆଖି ଆଗେ ଆଗେ ସେ ବିକଟ ରଣସ୍ଥଳେ
ଇଚଗଲ୍ କେନାଲ୍ କୂଳେ
ପ୍ଲାଟୁନ୍ ଆଗେଇ ଯୁଦ୍ଧ କରୁଛନ୍ତି
ଛବିଶ ବର୍ଷ ବୟସ୍କ ମେଜର ଆଶାରାମ୍ ତ୍ୟାଗୀ
ଅନ୍ଧକାର, ଅର୍ଦ୍ଧରାତ୍ରି
ମୁହଁପଟ୍‌ରୁ ଆସୁଅଛି ମାଡ଼ ମାଳ ମାଳ ତୋପ ଗୁଳି
ମେସିନ୍‌ଗନ୍ ଗୁଳି
ରାଇଫଲ୍ ବୁଲେଟ୍

ସତେ ଅବା ମରଣର ବର୍ଷା,
ତଳେ ଶତ୍ରୁ ବିଛାଇଛି ମାଇନ୍‌ର ଜାଲ
କରିଦେବ ଧ୍ୱଂସ,

ଯିବାକୁ ହିଁ ହେବ, ଆଗକୁ, ଆହୁରି ଆଗକୁ,
ଧ୍ୱଂସ କରିବାକୁ ହେବ ଶତ୍ରୁ
ଶତ୍ରୁର ପ୍ରତି ଘାଟି ସାନ ଅବା ବଡ଼, ପଗ ପଗ କରି
ଜଓ୍ୱାନ୍‌ର ଗତି ଅବିରାମ, ତା'ର ଧର୍ମ ସୈନିକର,
ଯେଉଁ ଟାର୍ଗେଟ୍, ଯେଉଁ ଲକ୍ଷ୍ୟସ୍ଥଳ ତା' ପାଇଁ ଆଦେଶ
ସେନାଧ୍ୟକ୍ଷଙ୍କର,
ଆଖି ଆଗେ ସେତିକ କରିବା ତା'ର କାମ,
ସବୁବେଳେ ଚରୈବେତି ଚରୈବେତି,
ତା' ଆଖିକି ନିଦ ନାହିଁ, ନ ଖୋଜେ ବିଶ୍ରାମ ତା'ର ଦେହ
ତା'ର ମାଂସପେଶି
ନ ଲୋଡ଼େ ଅଟକ ରହି ଆପଣା ତୃପ୍ତିରେ, ସଂଖ୍ୟା ଗଣିବାକୁ
କେତେ ସେ ପାରିଛି କରି, କେତେ ବାହାଦୁର୍ ସେ,
ଜାରିକରିବାକୁ ଆପଣାର ବୀରତ୍ୱର ଇସ୍ତାହାର,
ଖାଲି କାମ, ଆଖି ଆଗେ ଆଗେ, କଠୋର କର୍ତ୍ତବ୍ୟ
ପଡ଼ୁ ନିଆଁରେ ଜ୍ୱଳିବା ଅବା ପାଣିରେ ପଶିବା
ଅବା ଘୁଷୁରି ଘୁଷୁରି ଯିବା ଲୁହା କଣ୍ଟା ମୁନର୍ ଉପରେ
ଯିବାକୁହିଁ ହେବ, ଆଗକୁ ଆଗକୁ,
ନାହିଁ ଦ୍ୱିଧା, ନାହିଁ ପଛଘୁଞ୍ଚା
ସମୟ ନାହିଁ,
ମୁହୂର୍ତ୍ତ ହିଁ ମୂଲ ଏଠି,
ଅନାଇଛି ସ୍ୱଦେଶଜନନୀ, ରଖିଛି ଭରସା
ତା' ପୁତ୍ରର ଏ ବାହୁ ବଳକୁ ।

/

ଚାଲିଛି ଆଗକୁ, ଗୁରୁଣ୍ଡି ଗୁରୁଣ୍ଡି ଥାଟ, ସଫା କରି କରି ମାଇନ୍
ଫୋପାଡ଼ି ଫୋପାଡ଼ି ବୋମା,
ଆଗେ ଆଗେ କମାଣ୍ଡିଂ ଅଫିସର୍ ଆଶାରାମ ତ୍ୟାଗୀ ନିଜେ,
ଭାରତୀୟ ବାହିନୀର ଏଇ ବିଶେଷତ୍ୱ
ପ୍ରତି ପ୍ଲାଟୁନ୍‌ରେ ଆଗେ ଆଗେ ଦଳପତି
ନରହନ୍ତା ପଛେ ପାକସ୍ଥାନ ସେନା ଭଳି,

ଜର୍ଡ୍ୟାନ୍ ଉସ୍ତାଦେ ମାରେ, ନାହିଁ ତା'ର ଶଙ୍କା ଡର କଷ୍ଟ,
ଆଗେ ଆଗେ ଏ ଯୋଦ୍ଧୃ ଆଦର୍ଶ
ଭୁମେଁ ଭୁଞ୍ଜା ଉପଦେଶ ତାହା,
ସେ ଜୀବନ୍ତ ଅନୁକରଣୀୟ,
ଭୂମିର ଉପରେ ଯଶୋମାର୍ଗର ସର୍ଜିତ,
ଭୁଲେ ମାତ୍ର ଜର୍ଡ୍ୟାନ୍

ଏଇ ଦେଖ ଲକ୍ଷ୍ୟସ୍ଥଳ, ଦେଖନ୍ତି ଆଗରେ ସଜାହୋଇ ରହିଅଛି
ଦୁଇଟା ଶାଫେନା ମେସିନ୍‌ଗନ୍, କରୁଅଛି ଗୁଳିବୃଷ୍ଟି
ଆଉ ଦେଖ ପିଲ୍‌ବକସ୍ ଘାଟି, ଲୁହା ଆଉ ସିମେଣ୍ଟରେ ତିଆରି
ଯାହାର ଆଶ୍ରୟ ଭିତ୍ରୁ ଗୁଳି ଛୁଟେ ଶତ୍ରୁ,
ହଠାତ୍ ଉଠିଲ ପ୍ଲାଟୁନ୍ ଅତର୍କିତେ କଲ ଗୁଳିବୃଷ୍ଟି,
ଚୁପ ହେଲ ମେସିନ୍‌ଗନ୍ ଦୁଇ ଧ୍ୱଂସ ହେଲା ଗୋଟେ ପିଲ୍‌ବକସ୍
ଶତ୍ରୁପକ୍ଷ ଲଣ୍ଡଭଣ୍ଡ କ ହେଲ ! କ ହେଲ ! ଯେ ପଳାଏ ଯେଣେ,
ହତାହତ ନାନା ଶତ୍ରୁ,
ଶତ୍ରୁ ଟେକେ ଉପରରେ ଦୁଇହାତ ରକ୍ଷାକର ନମାର ନମାର,
ସେଇରେ ପଡ଼ିଛି ତେରଟା ପ୍ୟାଟନ୍ ଟ୍ୟାଙ୍କ୍ ଶାଫେନା ଓ ନୂଆ
ଖରବ ଜାଃଶଭ,
ହାତ ଟେକ ଧର ଉଭ ଧରା ଦନା ଥର ଥର ଶୁଷ୍କ କଣ୍ଠେ
କରନ୍ତି ଜଣାଣ, ତା'ର ଚାଳକମାନେ
ଆମେ କଲୁଁ ଆତ୍ମସମର୍ପଣ ଶରଣ ପଶିଲୁଁ
ହେ ବୀର ବନ୍ଦୀକର ଅଧମଂକୁ, ଜୀବନ୍ତେ ନ ମାର
ବନ୍ଦୀ ହେଲେ ଶତ୍ରୁ, ବନ୍ଦୀ ହେଲ ତେରଗୋଟା ଟ୍ୟାଙ୍କ୍
ବୀର ଆଶାରାମ ତ୍ୟାଗୀଙ୍କ
ପ୍ଲାଟୁନ୍‌ର ହାତେ
କିନ୍ତୁ ଏ କ'ଣ ହେଲ, ଉତ୍ତେଜନା ସରୁ ସରୁ
ବୀର ଆଶାରାମ ତ୍ୟାଗୀ
ଦେହୁଁ ବହେ ରକ୍ତ ଝର ଝର

ତନ୍ତ୍ର ଜନ୍ତୁ ବେକ ଧାର୍ଣ୍ଣି,
ଜୀବନ୍ତ ଉଠାଇ ସାଥୀମାନେ ସନ୍ତର୍ପଣେ
ରଣୋତ୍ସୁକ ଚିକିତ୍ସା କେନ୍ଦ୍ରକୁ,
ନିର୍ବାକ ହୋଇଲେ ଦେଖି ଚିକିତ୍ସକ
ଏ କି ଅଭିନବ ! କି ବିସ୍ମୟ ଏହା !
ଭେଦିଛି ଏ ଶରୀରରେ ଗୋଟେ ନୁହେଁ
ପାଞ୍ଚଟା ବୁଲେଟ୍
ତଥାପି ଏ ବୀର
ଏ ଦେହରୁ ପ୍ରାଣଶକ୍ତି ବୋହି ଯାଉ ଯାଉ,
ଏତେ ଆହତ ଶରୀରେ
ଦେଖାଇଲେ ଅପୂର୍ବ ବୀରତ୍ୱ !
ଶୁଶ୍ରୂଷା ଚିକିତ୍ସା ଯେତେ ହୋଇଥିଲା ବିଫଳ
ଉଡ଼ିଗଲା ସେ ବୀରଙ୍କ ଦେଶ ଅନୁରକ୍ତିମୟ
ଆବେଗ ସ୍ପନ୍ଦିତ ମହାପ୍ରାଣ
ସ୍ୱଦେଶର ଆକାଶକୁ ।

## ୬୧

ବୀରଚକ୍ର ପଦବୀ ଭୂଷିତ ମେଜର୍ ଜେନେରାଲ୍ ମେଘ୍ ସିଂ
ଦୀର୍ଘକାଳ କାର୍ଯ୍ୟକରି ସୈନ୍ୟ ବାହିନୀରେ
ଲୋଡ଼ୁଥିଲେ ନେବାକୁ ଅବସର,
କିନ୍ତୁ ଯେତେବେଳେ ପାକିସ୍ତାନ ଆରମ୍ଭିଲା ରଣ
ସେ ପୁଣି ଲୋଡ଼ିଲେ ନ ନେଇ ବିଶ୍ରାମ ଟିକେ
କରିବେ ସଂଗ୍ରାମ ପ୍ରିୟ ଜନ୍ମଭୂମି ପାଇଁ,
ଛମ୍ବ ଯୁଦ୍ଧେ ଠାଏ, ଦେଖାଇଲେ ଅପୂର୍ବ ବୀରତ୍ୱ,
ଯୁଦ୍ଧରେ ଆହତ ହେଲେ ବହେ ଦେହୁଁ ରକ୍ତ ଝରଝର
ତଥାପି ସେ ନ ହଟନ୍ତି ଟିକେ
କରିଯାନ୍ତି ଯୁଦ୍ଧ ଦେଖାଇ ଅପୂର୍ବ ତେଜ

ସେ ଖଣ୍ଡ ଯୁଦ୍ଧରେ ହୋଇଲା ବିଜୟ ତାଙ୍କ,
ଶତ୍ରୁ ପଟେ ଆହତଙ୍କ ସଂଖ୍ୟା ଘୁଡ଼
ଧ୍ୱଂସ ହେଲେ ସଇଁତିରିଶ ଜଣ

ମେଜର ଜେନେରାଲ୍ ରାଜିନ୍ଦର୍ ସିଂ
ଭାରତୀୟ ସାଞ୍ଜୁଆ ବାହିନୀର ଜଣେ ସେନାପତି
ଦଳ ସେହି ଧ୍ୱଂସ କଲେ ଶତ୍ରୁର ସେ ବହୁ ଟ୍ୟାଙ୍କ୍
ଲେଫ୍ଟେନେଣ୍ଟ୍ କର୍ଣ୍ଣେଲ୍ ସାଲିମ୍ କାଲେବ୍
ସେହି ତାଙ୍କ ଦଳ
ଧ୍ୱଂସ କଲେ ପନ୍ଦରଟା ପ୍ୟାଟନ୍ ଟ୍ୟାଙ୍କ୍
ବନ୍ଦୀକଲେ ଆଉ ନଅ ଗୋଟା
କି ବିସ୍ମୟକର
ମେଜର୍ ଭୂପିନ୍ଦର ସିଂ
ନିଜ ହାତେ ଧ୍ୱଂସକଲେ ସାତଟା ପ୍ୟାଟନ୍ ଟ୍ୟାଙ୍କ୍
ଏ ଜଗତ ହୋଇଲା ଆଶ୍ଚର୍ଯ୍ୟ
ଲେଫଟେନେଣ୍ଟ୍ କର୍ଣ୍ଣେଲ୍ ହାଇଡ଼୍
ଦେଖାଇଲେ ଅପୂର୍ବ ନେତୃତ୍ୱ
ତାଙ୍କ ଦଳ ଧ୍ୱଂସ କଲେ ପାଞ୍ଚଗୋଟା ପ୍ୟାଟନ୍ ଟ୍ୟାଙ୍କ୍
ରିକଏଲ୍‌ଲେସ୍ ରାଇଫ୍‌ଲ୍ ଗୁଳିରେ
ଭାରତର ଆଉ ଏକ ବୀରପୁତ୍ର, ସୁବେଦାର ଅଜିତ୍ ସିଂ,
ଶିଖ ରେଜିମେଣ୍ଟ ଯୋଦ୍ଧା
ଲଢ଼ିଥିଲେ ଅତୁଳ ବିକ୍ରମେ, ଜୀବନ ମୁହୂର୍ତ୍ତ
ଧ୍ୱଂସ କଲେ ନିଜ ବାହୁବଳେ ପାକିସ୍ତାନୀ ତୋପଟାଏ,
ପୂରଣ ହୋଇଲା ଲକ୍ଷ୍ୟ, ତେଜିଲେ ଜୀବନ

କେତେ ବୀର ନାନା ମତେ
କଲେ ସୃଷ୍ଟି ଇତିହାସ
ଯେପରି ସେ ମହାବୀର ଚକ୍ର ଉପାଧି ଭୂଷିତ
ପାକିସ୍ତାନୀ ଶତ୍ରୁ ଫଉଜର ଯମ

ହାଜୀପୀର୍ ଘାଟି ଯୁଦ୍ଧ ରଖିଲେ ଭାରତ
ମେଜର ରଣଜିତ୍ ସିଂ ଦୟାଲ୍,
ପାକିସ୍ଥାନୀ ସରକାର ଯାଚିଥିଲେ ପଚାଶ ହଜାର ଟଙ୍କା ପୁରସ୍କାର
ତାଙ୍କ ମୁଣ୍ଡ ଆଣି ଦେବାପାଇଁ, ବୃଥା ଆଶା ।

## ୭୨

କିଏ ଭୁଲିପାରେ
ସେହି ଦୁଇଭାଇ, 'କିଲର୍' ଆଖ୍ୟାଧାରୀ
ଭାରତୀୟ ବିମାନବାହିନୀ ଅଫିସର, ସ୍କ୍ୱାଡ୍ରନ୍ ଲିଡ଼ର୍ ଦୁହେଁ,
ଟ୍ରେଭର୍ ଓ ଡେନ୍‌ଜିଲ
ଆକାଶ ଯୁଦ୍ଧରେ, ଜଣେ ଜଣେ ଧ୍ୱଂସ କଲେ
ଗୋଟାଏ ଗୋଟାଏ ସେବର୍‌ଜେଟ୍,
ଆଗ ସେ କୃତିତ୍ୱ ଦେଖାଇଲେ ସାନଭାଇ ଟ୍ରେଭର୍
ପଛେ ବଡ଼ଭାଇ ଡେନ୍‌ଜିଲ୍

ଫ୍ଲାଇଟ୍ ଲେଫ୍‌ଟେନେଣ୍ଟ୍ କପିଲ ଭଟ୍ଟ କଲେ
ଆଜି ଏକ ସେବର୍‌ଜେଟ୍
ଫ୍ଲାଇଂ ଅଫିସର୍ ନେବ୍
ପୁଣି ଆଜି ଏକ
ଓ୍ୱିଂଗ୍ କମାଣ୍ଡର୍ ଗୁଡ୍‌ମ୍ୟାନ୍, ଆଜି ପି. ପି. ସିଂ
ସ୍କ୍ୱାଡ୍ରନ୍ ଲିଡ଼ର୍ ଜାତର୍ ଆଜି ହଣ୍ଡା
ଫ୍ଲାଇଟ୍ ଲେଫ୍‌ଟେନେଣ୍ଟ୍ ତ୍ରିଲୋଚନ ସିଂ, ରାଠୋର୍, କୁକ୍
ଫ୍ଲାଇଂ ଅଫିସର୍ ମାମ୍‌ଗାଇନ୍, ସାନ୍ଧୁ
ଆଜି ଆକାଶ ଯୁଦ୍ଧରେ ମହାବଳୀ କେତେ କେତେ କୀର୍ତ୍ତିମନ୍ତ ନାମ
କେହି ଅବା ଶେଷେ, ଦେଲେ ଶେଷ ତ୍ୟାଗ, ଜୀବନ ଆହୁତି

ସେମାନେ ପ୍ରତ୍ୟେକେ ଗଢ଼ିଲେ ଇତିହାସ
ରଖିଲେ ଭାରତର ଟେକ
ସଞ୍ଚରିଲେ ଭବିଷ୍ୟତ ପାଇଁ
ସାହସ ତ୍ୟାଗର ଆଉ ସ୍ୱଦେଶ ପ୍ରୀତିର
ଯୁଗେ ଯୁଗେ ଉଜ୍ଜ୍ୱଳ ଆଦର୍ଶ ।

ମୃତ୍ୟୁ !
ସେ ତ ଘରେ ବସିଲେ ବି ଆସେ, ଆସିବାର ଥିଲେ,
ସେଥିପାଇଁ ନେତାମାନଙ୍କ ବଡ଼ନକା ଅବା ଆୟୋଜନ,
ବନ୍ଧୁବାନ୍ଧି ଆଶ୍ଚର୍ଯ୍ୟ,
କେମିତି ଧରେ ଦଣ୍ଡ, କେମିତି ପଡ଼େ ବଜ୍ର,
ଚେତନାର କେଉଁ ସ୍ତରରେ ଆଗ ସେ ଜନ୍ମ ହୁଏ,
ମନକୁ ଗ୍ରାସ କରେ
ତା'ପରେ ଦେହକୁ
ତା' ତ ଜାଣେନାହିଁ କେହୁ ।

ଯେତେ ବୁଦ୍ଧିରେ ଯେତେ ବିଜ୍ଞାନ ମାପ,
ଗଡ଼ା ଗଡ଼ା ବହି ଆଉ ଯନ୍ତ୍ର ଆଉ କୋଠା,
ସେମାନେ ଉତ୍ତରଦାର ଦିଅନ୍ତୁ କାହିଁକି ସେ ମଲା,
କେବେ କ୍ୱଚିତ୍ ହୁଅନ୍ତୁ ଏକମତ,
ଦେଇ ପାରନ୍ତି ନାହିଁ
ମୃତ୍ୟୁର ଆରମ୍ଭ ଓ ଗତି ଓ ପରିଣତିକୁ ।

ଆଉ ଯେତେବେଳେ ତାର ଆସିବାର ନଥାଏ,
ସବୁ ଗଣନାକୁ ପରାଭୂତ କରି
ସବୁ ଡାକ୍ତରଙ୍କୁ ଚକିତ ଆଉ ସ୍ତବ୍ଧ କରି
ସେ ଆସେ ନାହିଁ, ଦୂରେଇ ରହେ,

ସତେ ଅବା ଜଷ୍ଟ୍ନା ଧାନ ଗଜା ହୁଏ
ଶୁଖିଲା କାଠରେ ପତ୍ର କଅଁଳେ,
ସେ ବ ଆଶ୍ଚର୍ଯ୍ୟ ।

ଆୟୁ କି ନଆୟୁ ମୃତ୍ୟୁ,
ଏ ମଣିଷ ସଦା ହିଁ ବ୍ୟାକୁଳ
କାଳେ ଆସିବ ।

ସାମାନ୍ୟ ଟିକିଏ ଜର,
ଅବା ସର୍ଦ୍ଦି
ଟିପ ଅଗରେ ପିନ୍‌କଣ୍ଟାର ମୁନରେ ଗୋଟାଏ ଚୋଟ୍,
ଆଖିରେ ଟିକିଏ ଧୂଳି
କେତେବେଳେ ଦେହଟା ଅଟା ଶୁଖିଗଲା ଟିକିଏ,
ଆଉ କ'ଣ ଟିକିଏ ଅଡୁଆ,
ସେତକରେ ଯେମିତି ଅବା,
ମଣିଷର ବୋଝେଇ ଶଗଡ଼ ଓଲଟି ପଡ଼େ,
ଭାଜଣିର ଅନ୍ତ ନାହିଁ
ଦଳାରେ ସେ ଡକା ଛାଡ଼େ "ଡାକ୍ତର, ରକ୍ଷାକର",
ଗୋଟାଏ ଗଲେ ଆଉ ଗୋଟାଏ,
ପେଟ ବେଗ ଗଲେ ମୁଣ୍ଡ ବେଗ,
ଜୀବନଦାୟକ ଢେଉ ଭାଙ୍ଗିବା,
ସବୁଥର ହେଲା କରୁଣ ଡାକ "ଡାକ୍ତର, ରକ୍ଷାକର"

ସୁସ୍ଥ ବେଳେ,
ଯେତେବେଳେ ଅବସର ଥାଏ, ଯେତେବେଳେ,
ଯେତେବେଳେ ମୁଣ୍ଡ ଉପରେ ଥାଏ ଛାତ,
ଆହାର ଓ ଆୟୋଜନ ସଞ୍ଚିତ ଥାଏ
ଆଉ ଥାଏ ଅଖଣ୍ଡ ନରାପତ୍ତା

ସେତେବେଳେ ବିଛଣାରେ ଘୋରପୁରି ହୋଇ ଶୋଇବା
ଆଉ ଗମ୍ଭୀର ହେବା ବନ୍ଧୁ ସ୍ୱଜନ ପରିବୃତ ହୋଇ,
ସ୍ମରି ହେବା ସାନ ବଡ଼ ଯେତେ ଆପଣାର ଷଡ଼ଯନ୍ତ୍ର,
ଆହା ହେଲା ନାହିଁ
ବିଶ୍ରାମ ନେବା  ନର୍ସିଂହୋମ୍‌ରେ,
ଔଷଧ ଖାଉଥିବା ଇଞ୍ଜେକ୍‌ସନ୍ ନେଉଥିବା
ଚଢ଼ିଥିବା ଭବିଷ୍ୟତର କେଉଁ ସୁଦିନକୁ ଅପେକ୍ଷା କରି,
ନିଜେ ସକେଇ ହେବା ଓ ଆପଣାର ଲୋକଙ୍କୁ କନ୍ଦେଇବା,
ଆପଣାର କେଉଁ ଅବୟବରେ କେଉଁ ମୁଦ୍ରା ଦେଖାଇ
ଉଲୁରି ଲଗେଇ ଦେବା
ଓ ଅନାଇଁ ଦେଖିବା ତାଙ୍କ ମୁହଁ ଆଖିର ଭଙ୍ଗୀ
ସେ ଅବସ୍ଥା ଜୀବନର ଆନନ୍ଦର ଏକ ଦୃଶ୍ୟଛବି,

ଅଳସ ଦେହ ସୁଖର,
ସତେ କ'ଣ ଏତେ ଜରୁରୀ ?
ମଣିଷ ତ ପୂଜା କରେ
ତା'ର ଦୁର୍ବଳତାକୁ
ତା ଉହାଡ଼ରେ କେଉଁ କଳ୍ପିତ ବଳକୁ ସ୍ୱପ୍ନ ଦେଖି ଦେଖି
ଈପ୍ସିତର ବଳ କି ସମୃଦ୍ଧି
ଏ ଜୀବନର କି ଅତୀତର କେଉଁ ଢଳିଲା ଜୀବନର
ଯାହାର ଚେତନା ଯେଣୁ ସେ ଜନ୍ମ ହୋଇଛି
ସେ ଆନନ୍ଦକୁ ଖୋଜେ ତା'ର ଲୁହରେ
ତୃପ୍ତିତାକୁ ଖୋଜେ
ଯେତେ ଭଙ୍ଗା ଦଦରା ଘରର ଖପରରେ,
ଖୋଜିବାଟା ହୁଏ ନାହିଁ ବୃଷ୍ଟି
ବୃଷ୍ଟି ହୁଏ ମନର ତୋଫାନ, ଇନ୍ଦ୍ରିୟର ଅସୁସ୍ଥତା
ଆଉ ଆଖି ଆଗରେ ସେହି ଖପରାର ଚେହେରା
କେତେ ରୂପରେ,

କେବେ ସେ ଚେଲ୍ ନଥିଲା ଘାଚ, ସୂକ୍ଷ୍ମ ସୂକ୍ଷ୍ମ,
କେବେ ତାଙ୍କ ସରୁ ସରୁ ହାତ ଗୋଡ
ଦୁର୍ବଳ ଦେହ–କାଣ୍ଡ, ବଙ୍କା ପୋକର ଟଳଟଳ ଠକଠକ,
ତା ଆନନ୍ଦ ଖାଲି ଆତଙ୍କ ନୈରାଶ୍ୟ ଓ ଶ୍ରାନ୍ତିର ପୂଜାରେ
ଆପଣା ପାଇଁ ହାହାକାରରେ
ଜୀବନର ଅନୁଭୂତି ଖାଲି ବାରମ୍ବାର ମରି ବାରମ୍ବାର ବଞ୍ଚି
ଉଠିବାରେ

ଆନନ୍ଦ ନୁହେଁ, ଆନନ୍ଦର ପ୍ରେତ ରୂପ
ସେ ନିଜପାଇଁ ବଞ୍ଚୁ ବଞ୍ଚୁ ମରୁଥାଏ,
ଚଢ଼ୁଥାଏ ଗୋଟାଏ ଚର୍ବିବୋଳା ଖୁଣ୍ଟ,
ଖସୁଥାଏ ଉଠୁଥାଏ,
ଶେଷଥର ଖସିପଡ଼ି ନ ଉଠି ଶୋଇବାଯାକେ ।

## ୭୩

ସେ ନଥିଲା ଭାରତ ଭୂଇଁରେ –ଆଦ୍ୟ ଅବା ଶେଷ ଯୁଦ୍ଧ ।
ବହୁତ ସହିଛି ଯୁଦ୍ଧ, ଏ ଭାରତ, ଏ ପୃଥିବୀ, ଯୁଗ ଯୁଗ ବିତିଯାଏ,
ଜଣାନାହିଁ କେବେ ହେବ ଯୁଦ୍ଧ
ଶେଷ ।

କାହା ଛୁଟିଲେ ଯୁଦ୍ଧ ପରେ, କାହା ଶତ୍ରୁ ବନ୍ଧୁ କେବେ ପୁଣି କେତେ
ବଦଳଯାକେ

ହୁଏ ମିତ୍ର, ମିତ୍ରବନ୍ଧୁ ପାଲଟନ୍ତି ଶତ୍ରୁ,
ନୁହେଁ କିଛି ଶେଷ କଥା,
କେଉଁ ଗଡ଼, କେଉଁ କ୍ଷେତ, ଉଚ୍ଚ ଅବା ଦର
ଯାହାର ସୁରକ୍ଷା ଅବା ବିଜୟର ମୂଳ

ଢନେ ହୋଇଥିଲ
ଅକଳନ ଆତ୍ମତ୍ୟାଗ, ରକ୍ତର ସମୁଦ୍ର ଅବା
ହଣାକଟା ପୋଡ଼ାଜଳା ମଣିଷ ଦେହର ପାହାଡ଼
ସମସ୍ତର ଚଳନ୍ତ ସୁଅରେ ଯାଏ କାହିଁ ବୁଡ଼ି ହଜ,
ତା ଆଲୁଅ ନଭିଯାଏ,
ଦେହଧାରୀ ଯେତେ ପ୍ରାଣୀ, ସନ୍ଥ ଅବା ଦସ୍ୟୁ,
ଆତ୍ମତ୍ୟାଗୀ ଅବା ସ୍ୱାର୍ଥପର
ହୁଅନ୍ତ ବଲୀନ ଢନେ,
ପୁବଣ କାହାଣୀ
କେବେ ଭୁଲ ହୋଇଯାଏ, ରହୁ ଯେତେକାଳ
କେତେ ଶହ ଅବା କେତେ ହଜାର ବରଷ,

**ମରେ ନାହିଁ ଯେ, ତା ନାଁ ସତ୍ୟ,**
ଯେତେ ଯହିଁ ପ୍ରାଣର ଆବେଗ, ଆପଣାକୁ ବଳ ଦେଇ
ଚଢ଼ିବାକୁ ରଖିବାକୁ ଅପରର ସୁଖଶାନ୍ତ ନବାପତ୍ର
ସବୁ ସେହି ସତ୍ୟର ଦ୍ରଷ୍ଟାକ
ହେଉ ଏକ ମୁହୂର୍ତ୍ତର ଝଲ
ଅବା ଦୀର୍ଘ ଜୀବନର ତ୍ୟାଗତପୋକ୍ଳିଷ୍ଟ ସାଧନାର ପ୍ରସୁତ ।

ସେ ସତ୍ୟ—
ଶୁକ୍ଳବରନ
ଜ୍ଞାନ-ପ୍ରୀତି-ଶାନ୍ତ
ସେ ନୁହଁଇ ହିଂସା କ ଜଘାସା
ସେ ନୁହଁଇ ଖୁରତା କ ଦାସ୍ୟ
ଲୋଭ ଅବା ସ୍ୱାର୍ଥ ।

ଭାରତର
ସହସ୍ର ସହସ୍ର, ଲକ୍ଷ ଲକ୍ଷ

ସେ ଯେତେ କଣଶାର ଯୁବା
ଗଲେ ସ୍କୁଲ ଘର ଛାଡ଼ି ବାପା ମା' ଭଉଣୀ ସାଥୀମାନଙ୍କ ଛାଡ଼ି
ଗଲେ ସ୍କୁଲ ଛାଡ଼ି ନୂଆ ବନ୍ଧୁ ହେଲା ଭରସା,
ତା ପେଟର ଶିଶୁ

ଅବା ପୁରୁଣା ଘରଣୀ ଆଉ ସାନ ବଡ଼ ପିଲା, ଏତ୍ତ୍ଟିରୁ ଏତ୍ତେ
ଗଲେ ସ୍କୁଲ ଛାଡ଼ିଦେଇ ସୁପ୍ତି ନବପତ୍ର, ସମ୍ପଦ କି ଶିଶ୍ୱ
କଏ କେଉଁ ଏକୋଇର ବଳା
କାହା ନୟନ ପିତୁଳ,

ସେମାନେ ଯାଇନଥିଲେ ହିଂସା-ଲୋଭ-ସ୍ୱାର୍ଥର ତାଡ଼ନାରେ,
ସେମାନେ ଯାଇନଥିଲେ ହାଣକୁ ଶରଧା ବଳିଲା ବୋଲି
ସେମାନେ ଯାଇନଥିଲେ କ୍ଷମତା ପାଇଁ କି ଧନ ପାଇଁ କି ନାଁ ପାଇଁ,
ସେମାନେ ତ ଜାଣିଥିଲେ
ସେମାନେ ଯାଉନାହାନ୍ତି ସଭାକୁ କି ସିନେମାକୁ,
ରାମ ନଅମୀ ଯାତ ଦେଖି କି ଦୋଳ ମେଲଣ ଦେଖି ।

ସେମାନେ ତ ଜାଣିଥିଲେ
ଝଡ଼ ପଡ଼ପାରେ ଏଇ ଦେହ ଆଖି ପଲକରେ କେବେ
କେଉଁ ଅପନ୍ତରା ଭୂଇଁରେ କି ପାହାଡ଼ରେ,
ନଦେଖି ବି ପାରେ କେହି
ଦେଲବେଳେ ଅନ୍ତିମ ନୈବେଦ୍ୟ, ସାହସର ଚୂଡ଼ାନ୍ତ ଦେଖାଇ
ବାହୁବର ବନ୍ଧନ ଛୁଡ଼ି ଚାଲେ କାନ୍ଦି

ସେହିମାନେ,
ଵୀର,
ମାତୃଭକ୍ତ ଦେଶଭକ୍ତ ଜନହିତକାମୀ
କର୍ତ୍ତବ୍ୟ ପାଳନେ
ଏକନିଷ୍ଠ,

ନାମହୀନ ଅନାଦି ଅନନ୍ତ
ସଦା ପ୍ରାଣବନ୍ତ ସଦା କ୍ରିୟାଶୀଳ
ଚିରନ୍ତନ ଶକ୍ତିର ସ୍ପନ୍ଦନ ତାଙ୍କର ଅନ୍ତରେ,
ସାର୍ଥକ ଜୀବନ ତାଙ୍କ ।

୭୪

ସେପ୍‌ଟେମ୍ବର ତେଇଶ ଊଣେଇଶ ଶହ ପଁଷଠି ସାଲ
ରାତି ବାଜିଥିଲା ତିନି
ସେ ବ୍ରାହ୍ମ ମୂହୂର୍ତ୍ତ ବେଳେ
ଚୁକ୍ତି ଅନୁସାରେ ହେଲା 'ଯୁଦ୍ଧ ବନ୍ଦ' ଜାରି, ଭାରତ ଓ ପାକିସ୍ଥାନ୍
ସମ୍ବରଣ ଅସ୍ତ୍ର
ବାଇଶ ଦିନର
ଘମାଘୋଟ ଆକ୍ରମଣ ପ୍ରତି ଆକ୍ରମଣ
ଅଟକିଲା,
ସେ ନଥିଲା ଶାନ୍ତି ମୈତ୍ରୀ, ଖାଲି 'ଯୁଦ୍ଧ ବନ୍ଦ' ରାଜିନାମା,
କିଆଁ ତ କ୍ରୁଦ୍ଧକ୍ରୁଥିଲା,
ଜାତିସଂଘ ଆଗେ ବାରମ୍ବାର ଅଭିଯୋଗ ହୁଏ ଭାରତର
ନାନାସ୍ଥାନେ ଶହଶହ ଘଟନାରେ ପାକିସ୍ଥାନ ଭଙ୍ଗକଲା ଚୁକ୍ତି,
ମନପ୍ରାଣ ଦେଇ ରକ୍ଷି ସତର୍କ ଓ ଉଜାଗର ଧରି ଅସ୍ତ୍ର
ଭାରତର ବୀରସେନା ରଖିଲେ ତା କବଚନ୍ତି ।

ଗଲା ଏତେ ଯୁଦ୍ଧ, ଧ୍ୱଂସ, କ୍ଷୟକ୍ଷତି,
ହେଲା ଏତେ ଜୟ, ପ୍ରସରିଲା ଭାରତର କୀର୍ତ୍ତିଗାଥା,
ତଥାପି ନ କରେ ସ୍ପର୍ଦ୍ଧା । ଏ ମହାନ୍ ଦେଶ,
ତଥାପି ନ ଛାଡ଼େ ତା'ର ମୌଳିକ ଆଦର୍ଶ —
"ଶାନ୍ତି ଆଉ ମୈତ୍ରୀ ପାଇଁ" ।

ଆହତ ରକ୍ତାକ୍ତ ଶତ୍ରୁ ବିଦ୍ୱେଷର ବିଷଡ଼ାକେ
ବାରମ୍ବାର ଦିଏ ଉତ୍ତେଜନା
ହ୍ରଗ ଗ୍ଧତେ "ଦଣ୍ଡ ସାଜ ଦଣ୍ଡ ସାଜ"
ପୁଣି ପୁଣି ଖୋଜେ ନୂଆ ନୂଆ ଅସ୍ତ୍ରଶସ୍ତ୍ର,
ଭାରତ ଅଟଳ

ତା'ର ଶତ୍ରୁ ନୁହେଁ ତ ମଣିଷ, ସବୁଠାରେ ଭାଇଭାଇ,
ତା ଶତ୍ରୁ—ହିଂସା ଓ ବିଦ୍ୱେଷ
ଭାରତ ତ ଲଢ଼େ ଥାପିବାକୁ ଜଗତରେ ଶାନ୍ତି ଅଉ ଭାଇଚାରେ ।

ତାହାର ପ୍ରମାଣ ଦେଲେ
ମାନବ ଜାତିକୁ ଅନ୍ତିମ ନିଶ୍ୱାସ ସଙ୍ଗେ କରି ଆଶୀର୍ବାଦ
ଜଗତର ସୃଷ୍ଟି ବାଂଛୁ
ଭାରତର ଶ୍ରେଷ୍ଠତମ ନେତା
ଭାରତ ପ୍ରଧାନମନ୍ତ୍ରୀ
ଜଗତର ହିତକାଂକ୍ଷୀ ଶାନ୍ତିକାମୀ ଶାନ୍ତିଦୂତ
ଅବିସ୍ମରଣୀୟ
ଲାଲ୍ ବାହାଦୁର୍ ଶାସ୍ତ୍ରୀ ।

୭୪

ରୁଷ୍‌ଦେଶେ ତାସ୍‌କେଣ୍ଟ୍ ନଗରେ
ଶାନ୍ତି ସ୍ରଷ୍ଟା ରୁଷ୍‌ର ପ୍ରଧାନମନ୍ତ୍ରୀ କୋସିଜିନ୍‌ଙ୍କ ଉଦ୍ୟମରେ ଅନୁଷ୍ଠିତ
ଭାରତ ଓ ପାକିସ୍ଥାନ୍ ମିଳାମିଶା ଭେଟାଭେଟି ସ୍ଥଳେ
ପାକିସ୍ଥାନର ପ୍ରେସିଡେଣ୍ଟ୍ ଆୟୁବ୍ ଖାଁଙ୍କ ଭୁଲେ ମିଶି
ଜଗତକୁ ଶୁଣାଇ ଘୋଷଣା
ଭାରତ ଓ ପାକିସ୍ଥାନ୍ ଦୁଇଦେଶ ମଧ୍ୟେ

ଶାନ୍ତି ମୈତ୍ରୀ ସୌହାର୍ଦ୍ଦ୍ୟ ସ୍ଥାପନ ପାଇଁ ଉଚ୍ଚାର ସଂକଳ୍ପ
ଚିହ୍ନି ରୂପରେଖ
ପ୍ରକଟାଇ ଜଗତର ଈର୍ଷା ଦ୍ୱେଷ ହିଂସାର ଅନ୍ଧାର ଚିର
ନୂଆ ଯୁଗ ଊଷା,
ଆଜି ତା'ର ଅଳ୍ପ କେତେ ଘଣ୍ଟା ପରେ
ହଠାତ୍ ହୃଦ୍-ରୋଗେ
ଘେନ ଏଇ ପୃଥିବୀରୁ
ଚିର ବିଦାୟ ।

ଜାନୁଆରି ଏଗାର ତାରିଖ ଊଣେଇଶ ଛଅଷଠି ସାଲ୍ ତାସ୍‌କେଣ୍ଟ୍
ନଗରେ, ରାତି ଗୋଟାଏ ପଚାଶ
ସେ ମେଲ୍ଲିଣି
ଜଗତ ଭୁଲିବ ନାହିଁ ।
କରି ଅକଳନ ଶ୍ରମ ଶାନ୍ତି ଯଜ୍ଞେ
ପୃଥିବୀରେ ଶାନ୍ତି ପାଇଁ ସେ ଏକ ଆତ୍ମବଳି ।

ଆଗେ ଥୋଇ ସେ ଦିବ୍ୟ ଆତ୍ମାଙ୍କ
ମର କଳେବର
କାଲିକାର ଯୁଦ୍ଧକ୍ଷେତ୍ରେ ଦୁଇ ଶତ୍ରୁ ଆଜି
କୁଣ୍ଢାକୁଣ୍ଢି, କନ୍ଦାକନ୍ଦ
ଯେଉଁ ଏକ ସ୍ପନ୍ଦନରେ ଥରି ଉଠେ ଦୁଇ ଦେଶ ବ୍ୟାପୀ
କୋଟି କୋଟି ହୃଦ ମାରବରେ ଝରିଯାଏ ଲୁହ
ଥରି ଉଠେ ଜଗତଯାକର ଅଗଣିତ ଜନ ହୃଦ
ସେ ସ୍ପନ୍ଦନ ମାନବିକତାର.
ଜୀବିତ ସେ ପ୍ରତି ପିଣ୍ଡେ,
ହେଉ ଅବା କାହିଁ ଆଚ୍ଛାଦିତ ଅହଂକାର-ମନ-ବୁଦ୍ଧି ପଟଳରେ,

ଶାସ୍ତ୍ରୀଜୀ —
ତାଙ୍କ ତିରୋଧାନ ଶୋକ ଲାଗେ
ସତେ ଅବା ମହାତ୍ମାଜୀ ସଦ୍ୟ ଯାଇଛନ୍ତି ଛାଡ଼ି ଆଜ
ଏ ପୃଥିବୀକୁ,
ଗୁରୁ ଆଉ ଶିଷ୍ୟ ହିଁ ସତେ ଅବା ଏକ ଅଂଶୀ
ଭାରତର ସନାତନ ବିବେକ ଓ ପ୍ରାଣ ରୂପ ଯେଉଁଥିଲେ ଦୁଇ ଘଟେ,

ଏ ଦେଶ ମଣିଷ ଧୂଳିମାଟି ପ୍ରତି ତାଙ୍କ ଯେଉଁ ସ୍ନେହ,
ଦେଶର ବିପଦରେ ଯେଉଁ ସ୍ଥିରବୁଦ୍ଧି, ନିଦାପଣ,
କର୍ତ୍ତବ୍ୟ ସାଧନେ ଯେଉଁ ଆମରଣ ନିଷ୍ଠା
ମନେପଡ଼ିଯାଆନ୍ତି ଭାରତର ବରେଣ୍ୟ ପୁତ୍ର ପଣ୍ଡିତ ଜବାହରଲାଲ୍
ନେହେରୁ

ଦୁଇବର୍ଷ ହୋଇନାହିଁ ଗଲେ ଚାଲି
ସେ ଶୋକ ଉଚ୍ଛୁଳି ଉଠେ ଶାସ୍ତ୍ରୀଜୀଙ୍କ ତିରୋଧାନେ,

ଯମୁନା କୂଳରେ ପୁଣି ଜଳେ ଚିତା
ମଣିଷଂକ ହୃଦୟେ ହୃଦୟେ,
ଭାରତର ଘରେ ଘରେ
ଆଜ କେଉଁ ଦୂର ଦୂରାନ୍ତରେ ପୃଥିବୀର ନାନା ଦେଶେ
ଆପେ ଆପେ ଝରେ ବାଣୀ—
"ସେ ଥିଲେ ଶାନ୍ତିର ସୈନିକ,
କାୟମନୋବାକ୍ୟେ
ଶାନ୍ତି ପାଇଁ ଶ୍ରମ କରି କରି
ଅକାଳରେ କ୍ଷୟ କଲେ ଦେହ
ଦେଲେ ପ୍ରାଣବଳି ।

ସେ ତ ଥିଲେ—
ଶାନ୍ତି-ଉପାସକ, ଅହଂକାର, ସାତ୍ତ୍ୱିକ, ସ୍ନେହୀ
ଅହିଂସା ମନ୍ତ୍ର ସାଧକ, ବିନୟୀ, ଅକ୍ରୋଧୀ

ସରଳ ନିରାଡମ୍ବର, ଶାନ୍ତମୂର୍ତ୍ତି, ଅଳ୍ପଭାଷୀ ମିଷ୍ଟଭାଷୀ
ବଡ଼ାଇ କି ପ୍ରଶସ୍ତିରବିହୀନ ନିରଳସ କର୍ମଯୋଗୀ
ବିବାଦ ଓ ବିଦ୍ୱେଷକୁ ଦୂର କରି
ଯୋଡ଼ିବାକୁ ଫଟାଫଟି ନାନା ମନ ସେ ଯେଉଁ କମିଆଁ ଲୋଡ଼ା
ତାଙ୍କର ସେ ସହଜ ବିଭୂତି ।

ଯୁଦ୍ଧକୁ ସେ ଘୃଣା କରୁଥିଲେ ।
ଶାନ୍ତି ପରିଯନ୍ତେ କରିଥିଲେ ଚେଷ୍ଟା ନଚେତ୍ ଯେପରି ଭାରତକୁ
ଧରିବାକୁ ଅସ୍ତ୍ର କେବେ କାହାରି ବିରୁଦ୍ଧେ,
ହେଲା ଯେବେ ସେ ଚେଷ୍ଟା ବିଫଳ
ଅତର୍କିତ ଆକ୍ରମଣେ ପଡ଼ୋଶୀ ରାଷ୍ଟ୍ରର
ବାଧ୍ୟହୋଇ ଅତି କ୍ଷୁବ୍ଧ ମନେ ନେଇଥିଲେ ଗମ୍ଭୀର ନିଷ୍ପତ୍ତି
ଭାରତକୁ ଲଢ଼ିବାକୁ ହେବ ଅସ୍ତ୍ରଧର
କରିବାକୁ ଶତ୍ରୁ ଆକ୍ରମଣ ପ୍ରତିହତ ।

ଭାରତ ଓ ପାକିସ୍ଥାନ ଯୁଦ୍ଧବେଳେ
ଏ ରାଷ୍ଟ୍ରର ମଙ୍ଗ୍ ଆଳ, ଅଭ୍ରାନ୍ତ, ଅକ୍ଳାନ୍ତ
ବିବେକୀ ବିଶ୍ୱରବନ୍ତ, ଧୈର୍ଯ୍ୟଶାଳୀ, ଦୃଢ଼
ରାଷ୍ଟ୍ରନେତା ଥିଲେ
ଭାରତ ପ୍ରଧାନମନ୍ତ୍ରୀ ଶ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀ ।

ସେ ଯୁଦ୍ଧରେ ସାଫଲ୍ୟ ଓ ବିଜୟ ଗୌରବ
ଅଧିକାରୀ ହୋଇଲା ଭାରତ
ପୁଣି, ଭାରତ ଓ ପାକିସ୍ଥାନ ମଧ୍ୟେ ଗଢ଼ିବାକୁ ଶାନ୍ତି-ସେତୁ
ଆପ୍ରାଣ ଉଦ୍ୟମ ତାଙ୍କ, ନିଷ୍ଠାପର, ଅତି ଐକାନ୍ତିକ,
ତାଙ୍କର ବିଶ୍ୱାସ ଥିଲା
ଶାନ୍ତିର ବିଜୟ ପାଇଁ ପ୍ରୟୋଜନ
ଯୁଦ୍ଧ ଜୟ ଚେଷ୍ଟାଠାରୁ ବଳି ଆହୁରି ଉଦ୍ୟମ ଶ୍ରମ ।

ଶାନ୍ତ ପ୍ରଚେଷ୍ଟାରେ ଗୌରବ ଓ ବଳସ୍ୱର ଚରମ ଶିଖରେ ଚଢ଼ି
ନକ୍ଷେପିଲେ ଦେହ
ହୋଇଲେ ଅମର
ରଖିଗଲେ ପୃଥିବୀ ଆଗରେ ଅଭୂଳ ଆଦର୍ଶ—
ଧ୍ୱଜ ଯେତେ ରଣସଜ୍ଜା,
ଘୋଡ଼ ଯେତେ ଯୁଦ୍ଧର କାହାଳ
ବଜ ବଜ ଡାକୁଥାଉ ହିଂସା ଆଉ ହନନ ତୋଫାନ
ମିଳୁ ଯେତେ ଯୁଦ୍ଧର ବଳସ୍ୱ
ସେ ନୁହେଁ ବାଟର ଶେଷ
ଆଉ ଅଛି, ଆଉ ଅଛି
ଶାନ୍ତ, ପ୍ରେମ, ମୈତ୍ରୀ,
ମେଘର କାଳିମା ଟପି
ଆକାଶରେ ରହିଛି ନୀଳିମା, ଶାନ୍ତ, ସ୍ଥିର, ସନାତନ ।



## ଲେଖକଙ୍କର ଅନ୍ୟ ପ୍ରକାଶିତ ପୁସ୍ତକାବଳୀ

---

## ଲେଖକଙ୍କର ଆମ ପ୍ରକାଶିତ
## ପୁସ୍ତକାବଳୀ

---

୧। ଉତ୍କଳମଣି

୨। ମନର ନଆଁ

୩। କିଛି କହିବାକୁ ଚାହେଁ

୪। ମହାପୁରୁଷ